# ପୁନଶ୍ଚ ସଂଗ୍ରାମ

ଡକ୍ଟର ନାରାୟଣ ସାହୁ



# ପୁନଶ୍ଚ ସଂଗ୍ରାମ

( ନାଟ୍ୟମ୍ ପ୍ରତିଯୋଗିତାରେ ଶ୍ରେଷ୍ଠ
ନାଟକ ରୂପେ ପୁରସ୍କୃତ )

ଡକ୍ଟର ନାରାୟଣ ସାହୁ

ସାହିତ୍ୟ ସଂଗ୍ରହ ପ୍ରକାଶନ
ବିନୋଦବିହାରୀ, କଟକ - ୨

# ପୁନଶ୍ଚ ସଂଗ୍ରାମ

ଲେଖକ :
ଡକ୍ଟର ନାରାୟଣ ସାହୁ

ପ୍ରକାଶକ :
ସାହିତ୍ୟ ସଂଗ୍ରହ ପ୍ରକାଶନ
ବିନୋଦବିହାରୀ, କଟକ - ୨

ପ୍ରଥମ ସଂସ୍କରଣ :
୨୦୦୦

ପ୍ରଚ୍ଛଦପଟ :
ବିଜୟ ପ୍ରଧାନ

ଡି.ଟି.ପି. :
ୟୁନିଟେକ୍
କଟକ - ୧

ମୁଦ୍ରଣ :
ରୟାଲ୍ ହାପ୍‌ଟୋନ୍ କୋ
କଟକ

ମୂଲ୍ୟ : ୩୦ ଟଙ୍କା

# ପୁନଶ୍ଚ ସଂଗ୍ରାମ

ଚରିତ୍ର

| | | | |
|---|---|---|---|
| ୧ । | ବୃଦ୍ଧ ନିତାଇରାମ | – | ସ୍ୱାଧୀନତା ସଂଗ୍ରାମୀ |
| ୨ । | ପରମଗୁରୁ | – | ପୁଲିସ ଇନ୍‌ସପେକ୍ଟର |
| ୩ । | ମାଲପାଣି | – | କନେଷ୍ଟବଲ |
| ୪ । | ଗାଇମାଧବ | – | ନେତା |
| ୫ । | ବଗୁଲି ଦାସ | – | କୁଜିନେତା |
| ୬ । | ଚରଣ ଦାସ | – | କୁଜି ନେତାର ଚାମଚା |
| ୭ । | ସଲିମ | – | ନେତାଙ୍କ ଭଡ଼ାଟିଆ ଗୁଣ୍ଡା |
| ୮ । | ରାମୁ | – | ଭାରତୀର ମାନସିକ ବିକାରଗ୍ରସ୍ତ ପୁତ୍ର |
| ୯ । | ଭାରତୀ | – | ବିଧବା |
| ୧୦ । | ସମୟ | | |

[ 'ବନ୍ଦେମାତରମ୍' ନାଟକର ନାମ ପରିବର୍ତ୍ତନ କରାଯାଇ 'ପୁନଶ୍ଚ ସଂଗ୍ରାମ' ରଖା ଯାଇଛି । ]

## ନାଟ୍ୟମ୍-ଅନୁଗୁଳ ଦ୍ୱାରା ଆୟୋଜିତ

## ପଞ୍ଚମ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ

## ଆମେ-କ୍ରାନ୍ତି-ଉଦଳାର ପ୍ରସ୍ତୁତି

# "ପୂନଶ୍ଚ ସଂଗ୍ରାମ"

**ପ୍ରଥମ ପରିବେଷଣ ସ୍ଥାନ :** ଅନୁଗୁଳ ସଭାଘର **ସମୟ :** ୧୪.୧୨.୧୯୯୭

## ବିଭିନ୍ନ ଭୂମିକାରେ

| | | | |
|---|---|---|---|
| ୧। | ନିତାଇରାମ | — | ରତ୍ନାକର ଦାଶ |
| ୨। | ପରମଗୁରୁ | — | ବି. ଲରେନ୍‌ସ କୁମାର |
| ୩। | ମାଳପାଣି | — | ପ୍ରଦ୍ୟୁମ୍ନ ଦାସ |
| ୪। | ବଗୁଲି ଦାସ | — | ପ୍ରଦୀପ କୁମାର ପଣ୍ଡା |
| ୫। | ଚରଣ ଦାସ | — | କ୍ଷୀରୋଦ ମହାନ୍ତି |
| ୬। | ଗାଲମାଧବ | — | ଆଶିଷ ମହାନ୍ତି |
| ୭। | ସଲିମ | — | ବରଦାକାନ୍ତ ପାତ୍ର |
| ୮। | ରାମୁ | — | ରତିକାନ୍ତ ବେହେରା |
| ୯। | ସମୟ | — | ମାନସ କୁମାର ନାଏକ |
| ୧୦। | ଭାରତୀ | — | ଜ୍ୟୋତ୍ସ୍ନା ରାମଶର୍ମା |
| | ନିର୍ଦ୍ଦେଶନା | — | ରାମଚନ୍ଦ୍ର ମହାପାତ୍ର |
| | ସଙ୍ଗୀତ ପରିଚାଳନା | — | ବେଣୁଧର ଜେନା |
| | ମଞ୍ଚ ପରିଚାଳନା | — | ନିରଞ୍ଜନ ସାହୁ, ଦେବେନ୍ଦ୍ର ମହାନ୍ତି, ମହେଶ୍ୱର ପୃଷ୍ଟି। |

---

**ପ୍ରାପ୍ତ ପୁରସ୍କାର–** ଶ୍ରେଷ୍ଠ ନାଟ୍ୟକାର, ଶ୍ରେଷ୍ଠ ଅଭିନେତା, ଅଭିନେତା, ଶ୍ରେଷ୍ଠ ଟିମ୍, ୨ୟ ଶ୍ରେଷ୍ଠ ପ୍ରଯୋଜନା ।

'ଆମେ ଭଞ୍ଜ କଳାକାର' ପ୍ରଯୋଜିତ ନାଟକ ଉତ୍ସବରେ
'ଆମେ କ୍ରାନ୍ତି'ର ନାଟକ

# ''ପୁନଶ୍ଚ ସଂଗ୍ରାମ''

ପରିବେଷଣ ସ୍ଥାନ–ଟାଉନକ୍ଲବ, ଉଦଳା

ଅଭିନୟ ରଜନୀ–୨୭.୧.୧୯୯୮

## ବିଭିନ୍ନ ଭୂମିକାରେ

| | | |
|---|---|---|
| ନିତାଇରାମ | – | ରତ୍ନାକର ଦାଶ |
| ପରମଗୁରୁ | – | ବି. ଲରେନ୍ସ କୁମାର |
| ମାଲପାଣି | – | ପ୍ରଦ୍ୟୁମ୍ନ ଦାସ |
| ବଗୁଲି ଦାସ | – | ପ୍ରଦୀପ କୁମାର ପଣ୍ଡା |
| ଚରଣ ଦାସ | – | କ୍ଷୀରୋଦ ମହାନ୍ତି |
| ସଲିମ | – | ବରଦାକାନ୍ତ ପାତ୍ର |
| ଗାଲମାଧବ | – | ଅଖିଳ ସ୍ୱାଇଁ |
| ରାମୁ | – | ମାନସ କୁମାର ନାୟକ |
| ଭାରତୀ | – | କୃଷ୍ଣକାନ୍ତା କର |
| ନିର୍ଦ୍ଦେଶନା | – | ରାମଚନ୍ଦ୍ର ମହାପାତ୍ର |
| ସଙ୍ଗୀତ | – | ବେଣୁଧର ଜେନା |

ବିଶିଷ୍ଟ ସମାଲୋଚକ ନାଟ୍ୟବିଶେଷଜ୍ଞ

ଡଃ ସଚ୍ଚିଦାନନ୍ଦ ମିଶ୍ରଙ୍କୁ ....

ନାଟ୍ୟକାର

# ପ୍ରସ୍ତାବନା

ସ୍ଥାନ – ଯେ କୌଣସି ସ୍ଥାନ

ସମୟ – ଯେ କୌଣସି ଅବଧି

ଚରିତ୍ର – ସମୟ

[ମଞ୍ଚରେ ପାତଳ ଅନ୍ଧାର । ମଝିରେ ବିଜୁଳି ଆଲୋକରେ ମଞ୍ଚ ବେଳେ ବେଳେ ଆଲୋକିତ । ସମଗ୍ର ମଞ୍ଚରେ ଏକ ପ୍ରକାର ଭୟାବହତା । ହୁଏତ ପ୍ରଳୟର ପୂର୍ବରାଗ । ଏ ସମସ୍ତ ଘନଘଟା ମଧ୍ୟରେ ଶୁଭିଛି ଏକ ଉଦ୍‌ଘୋଷଣ । କିଏ ଯେମିତି ବଜ୍ରକଣ୍ଠରେ ଘୋଷଣା କରିଚାଲିଥିଲା।]

ଘୋଷଣା :

ଏକ ମହାନାଟକ ଆରମ୍ଭର ପୂର୍ବ ମୁହୂର୍ତ୍ତ । ଆପଣମାନେ ଏହାକୁ ପ୍ରସ୍ତାବନା କହିପାରନ୍ତି, କିମ୍ବା କୌଣସି ଏକ ଘଟଣାର ଉପୋଦ୍‌ଘାତ ମନେକରି-ପାରନ୍ତି । ମୁଁ ଆପଣମାନଙ୍କୁ ନେଇଯାଉଛି ସେହି ସ୍ଥାନକୁ, ଯାହା ମନ୍ଦିର ନୁହେଁ, ମୁଖଶାଳା । ଯୋଉଠୁ ଆପଣମାନେ ନିଜ ଭିତରକୁ ଚାହିଁବାର ସୁଯୋଗ ପାଇପାରିବେ । ସତରେ 'ମୁଖଶାଳା', କିଛି ନ କହି ମଧ୍ୟ ଅନେକ କିଛିର ସଙ୍କେତ ବହନ କରିଥାଏ । ଆସନ୍ତୁ ଭେଟିବା ମୁଖଶାଳାର ସେହି କୁଶଳୀ କଳାକାରକୁ...

[ମଞ୍ଚର ଅନ୍ଧକାର ଧୀରେ ଧୀରେ ଦୂରେଇ ଯିବ । ଆଲୋକର ପ୍ରଥମ ରେଣୁ ପୃଥିବୀ ସ୍ପର୍ଶ କରିବ । ସେହି ପବିତ୍ର ଲଗ୍ନରେ ମଞ୍ଚରେ ଦେଖାଦେବ 'ସମୟ', ଯିଏ ରୂପହୀନ, ଗନ୍ଧହୀନ ଓ ବର୍ଣ୍ଣହୀନ । ଚତୁର୍ଦ୍ଦିଗକୁ ଥରେ ନିଜର ଦୃଷ୍ଟି ବୁଲାଇ ଆଣିଛି ସମୟ । ଏକ କାଞ୍ଚନିକ ପରିକ୍ରମାର ଆରମ୍ଭ ହୋଇଛି ଆଲୋକର ବର୍ଣ୍ଣାଳୀ ମଧ୍ୟରେ । ପରିକ୍ରମା ଶେଷରେ ସମୟ ଏକ ନିର୍ଦ୍ଦିଷ୍ଟ ବିନ୍ଦୁରେ ସ୍ଥିର ହୋଇଯିବ । ଆଉ ତରଙ୍ଗାୟିତ ହେବ ପୃଥିବୀ ବକ୍ଷ । ସମୟ ଭିତରେ ସୃଷ୍ଟି ହେବ ଅଜସ୍ର

**ସ୍ପନ୍ଦନ । ଏକ ଲୋହିତ ରଶ୍ମି ସମୟ ଉପରେ ସ୍ଥିର ହେବ । ଥରି ଉଠିବ ସମୟର କଣ୍ଠ...]**

ସମୟ : ସୁଧୀବୃନ୍ଦ ! ମୁଁ ନିରବଧି... ମୁଁ ମହାକାଳ... ମୁଁ ପ୍ରଳୟ... ମୁଁ ସତ୍ୟ... ସନାତନ... ସମୟ । ମୁଁ ଦେଖିଛି ଜାପାନର ଧ୍ୱଂସାବଶେଷ । ମୁଁ ଅଙ୍ଗେ ଲିଭାଇଛି ସୋଭିଏତ୍‌ର ପତନ । ମୋରି ବକ୍ଷରେ ଉଙ୍କି ମାରିଛନ୍ତି କେତେ ରାଜତନ୍ତ୍ର... ବ୍ୟକ୍ତିତନ୍ତ୍ର... ଆଉ ଗଣତନ୍ତ୍ର ।

**[ଝଡ଼ ତୋଫାନର ଉଦ୍ଦାମ ସ୍ୱର । ଯେମିତି ବିଶ୍ୱକୁ ନିମିଷେକ ମଧ୍ୟରେ ନିଃଶେଷ କରିବାକୁ ପ୍ରସ୍ତୁତ । ସମୟ ମୁଖ-ମଣ୍ଡଳରେ ସ୍ମିତ ହାସ୍ୟର ଉଜ୍ଜ୍ୱଳ ସମ୍ଭାବନାର ସ୍ୱାକ୍ଷର...]**

ସମୟ : ମୁଁ ଅନେକ ସ୍ୱରର ଝଙ୍କାର । ମୁଁ ବ୍ୟକ୍ତିର ବିତର୍କ । ମୁଁ ସମଷ୍ଟିର ସିମ୍ଫୋନୀ । ମୁଁ ଶୂନ୍ୟ... ମୁଁ ପୂର୍ଣ୍ଣ... ! ଅନେକ ସୃଷ୍ଟି ଏବଂ ଅନେକ ପ୍ରଳୟର ମୁଁ ଆଦି । ମୋରି ହାତର କ୍ରୀଡ଼ନକ ନେପୋଲିୟନ ବୋନାପାର୍ଟ । ମୋ ହୃଦୟର ସ୍ପର୍ଦ୍ଧିତ ଅହଙ୍କାର ହିଟଲର୍ । ମୋରି ସଂଘର୍ଷର ସୀତ୍କାର ସଦ୍ଦାମ ହୁସେନ ।

**[ସୟର କଣ୍ଠସ୍ୱର ନରମି ଆସିଛି । ଭାବ ଆଉ ଆବେଗର ପରିବର୍ତ୍ତନ]**

ସମୟ : ମୁଁ ବ୍ୟକ୍ତି... ମୁଁ ସମଷ୍ଟି ! ମୁଁ ଗାନ୍ଧି... ମୁଁ ଗୋପବନ୍ଧୁ । ମୁଁ ମାର୍ଟିନ ଲୁଥର ଆଉ ମଦର ଟେରେସା । ମୁଁ ଦେଖିଛି ବ୍ରିଟିଶର ବର୍ବରତା । ମୁଁ ଶ୍ରବଣ କରିଛି ସ୍ୱାଧୀନତାର ଶଙ୍ଖ... ।

**[ଅନ୍ତରାଳରୁ ଦେଶାତ୍ମବୋଧକ ସଙ୍ଗୀତର ସ୍ୱର ଗୁଞ୍ଜରିତ ହୋଇ ଉଠିଛି ]**

ସମୟ : ସ୍ୱାଧୀନତାର ପଚାଶବର୍ଷ ପୂର୍ତ୍ତି ଉପଲକ୍ଷେ ଭାରତୀୟ ଉପମହାଦେଶର ଗଳିକନ୍ଦିରେ ଆଜି ସୁବର୍ଣ୍ଣ ଜୟନ୍ତୀର ଅନାହତ ସ୍ୱର । ସୁଧୀବୃନ୍ଦ, ଏଇତ ସମୟ । ପରଖିବାକୁ ନିଜକୁ ଏବଂ ଅନ୍ୟକୁ । ପଚାଶବର୍ଷ ଲୁହଲହୁର ସ୍ୱାଧୀନତାକୁ...

**[ସମୟ ଧୀରେ ଧୀରେ ଅପସରି ଯାଉଛି ଆଲୋକର ବର୍ଣ୍ଣାଳୀ ମଧ୍ୟରେ ]**



# ପ୍ରଥମ ଦୃଶ୍ୟ

ସ୍ଥାନ — ସହରର କୌଣସି ଛକ

ସମୟ — ଉଷାକାଳ

ଚରିତ୍ର — ବୃଦ୍ଧ ନିତାଇରାମ, କିଛି ଲୋକ, ଚରଣ, ବଗୁଲି, ଗାଳମାଧବ

[ସହରର ଜନଗହଳି ସ୍ଥାନର କୌଣସି ଏକ ଛକ । ନାଁ ହେଉଛି ଗାନ୍ଧି ଛକ । ଏଇ ଛକ ଉପରେ ସ୍ଥାପିତ ହୋଇଛି ମହାତ୍ମା ଗାନ୍ଧିଙ୍କର ଏକ ପୁରୁଣା ପ୍ରତିମୂର୍ତ୍ତି । ବଡ଼ି ଭୋର ସମୟ । ଦୂରରୁ ଭାସି ଆସୁଥିଲା 'ରାମଧୁନ'ର କେତୋଟି ପଦ । ପ୍ରତିମୂର୍ତ୍ତି ପାଖକୁ ଧୀରେ ଧୀରେ ଆସିଛନ୍ତି ଜଣେ ବୃଦ୍ଧ । ସ୍ୱାଧୀନତା ସଂଗ୍ରାମୀ ନିତାଇରାମ୍ । ବୟସର ପାଂଶୁଳତା ସତ୍ତ୍ୱେ ବୃଦ୍ଧ ଯେମିତି ଯୁବସୁଲଭ ଉନ୍ମାଦନାରେ ବିଭୋର । କଣ୍ଠରୁ ଉଚ୍ଚାରିତ ହେଉଛି ରାମଧୁନ୍‌ର ସେହି ଅନାହତ ନାଦ । ବୃଦ୍ଧ ପ୍ରତିମୂର୍ତ୍ତି ଗଳାରେ ଫୁଲମାଳ ଦେଉଛନ୍ତି । ଧୂପ ଦେଉଛନ୍ତି ]

ବୃଦ୍ଧ : ବାପୁ, ଏ ଦେଶକୁ ତମେ ନ ଚାହିଁଲେ ଆଉ କିଏ ଚାହିଁବ ? ଅନ୍ଧାର ଭିତରେ ସେମାନଙ୍କୁ ବାଟ ଦେଖାଇବ କିଏ ? ସେମାନେ କ'ଣ କରୁଛନ୍ତି, ନିଜେ ଜାଣି ପାରୁନାହାନ୍ତି ।

[ବୃଦ୍ଧ ନିତାଇରାମଙ୍କ ଆଖିରେ ଜମିଆସିଛି କେଇବିନ୍ଦୁ ଲୁହ । କଣ୍ଠସ୍ୱର ହୋଇଛି ଆର୍ଦ୍ର ]

ବୃଦ୍ଧ : ବାପୁ, ତମେ ତ ଚାଲିଗଲ । ଉଦ୍ଧାର ପାଇଗଲ । ହେଲେ ଯେଉଁମାନଙ୍କ ହାତରେ ସୁନାର ଭାରତକୁ ଟେକି ଦେଇଗଲ, କେବେ ଜାଣିବାକୁ ଚେଷ୍ଟା କରିଛ, ସେ ଭାରତ କେମିତି ଅଛି !

[ଭାବର ସାନ୍ଦ୍ରତା ବୃଦ୍ଧଙ୍କ କଣ୍ଠସ୍ୱରକୁ ରୁନ୍ଧି ପକାଉଥିଲା । ସେ ଅପଲକ ଭାବେ ଚାହିଁ ରହିଥିଲେ ପ୍ରତିମୂର୍ତ୍ତି ଆଡ଼େ ।

ମନେ ମନେ ଯେପରି ବାପୁ ସହିତ ଅନେକ କିଛି କଥା ହେଉଥିଲେ । ଏଇ ସମୟରେ ଦୂରରୁ ଭାସିଆସିଛି ସ୍ଲୋଗାନ୍ । ସ୍ଲୋଗାନ କ୍ରମଶଃ ନିକଟତର ହେବାରେ ଲାଗିଛି । ବୃଦ୍ଧ କାନ ଡେରିଛନ୍ତି... ]

ସ୍ଲୋଗାନ : ଭାରତ ମାତା କି—

ଜନତା : 'ଜୟ'...

ସ୍ଲୋଗାନ : ମହାତ୍ମାଗାନ୍ଧି କି—

ଜନତା : 'ଜୟ'...

ସ୍ଲୋଗାନ : ନେତାଜୀ ସୁଭାଷ ଚନ୍ଦ୍ର ବୋଷ କି—

ଜନତା : 'ଜୟ'...

[ସ୍ଲୋଗାନ୍‌ର ସ୍ୱର ନରମି ଆସିଛି ]

ବୃଦ୍ଧ : ବାପୁ, ସେମାନେ ଆସୁଛନ୍ତି । ଆଜି ସ୍ୱାଧୀନତା ଦିବସ । ପଚାଶତମ ସ୍ୱାଧୀନତା ଦିବସ ।

ସ୍ଲୋଗାନ : ସ୍ୱାଧୀନ ଭାରତ କି—

ଜନତା : 'ଜୟ'...

ବୃଦ୍ଧ : ବାପୁ, ଏ ଦେଶବାସୀ ତମ ପାଖକୁ ଆସୁଛନ୍ତି । ସେମାନେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ କରୁଛନ୍ତି । ଚାହୁଁଚାହୁଁ ବିତିଗଲା ପଚାଶବର୍ଷ... ପଚାଶବର୍ଷ... ପଚାଶବର୍ଷ...

ସ୍ଲୋଗାନ : 'ଆମର ନେତା ତମର ନେତା ଗାଲମାଧବ କି'—

ଜନତା : 'ଜୟ'...

ବୃଦ୍ଧ : 'ହୁଁ'... ଗାଲମାଧବ !

[ତାଚ୍ଛଲ୍ୟଭରା ଦୃଷ୍ଟିରେ ଶୋଭଯାତ୍ରାଆଡ଼କୁ ଚାହିଁ ବୃଦ୍ଧ ଚାଲି ଯାଇଛନ୍ତି । ନେତା ଗାଲମାଧବ ନମସ୍କାର ପୂର୍ବକ ପ୍ରବେଶ କରିଛନ୍ତି । ଆଉ ସାଥିରେ କେତେଜଣ ସମର୍ଥକ ]

ବଗୁଲି : ଆଜ୍ଞା, ମୁଁ ବଗୁଲି ଦାସ, ବାପା ଚଗଲା ଦାସ । ଗ୍ରାମ/ପୋଷ୍ଟ ଅଫିସ ଭେମୋଦେଈପୁର, ଜିଲ୍ଲା... । ଜିଲ୍ଲା ନାଁଟା... ତିନିଥର change ହେଲାଣି । ତେଣୁ ତା' କଥା ଛାଡ଼ି ଦିଅନ୍ତୁ । କେତେ ଏବେ ମନେ ରଖିବ ? ହଁ, ମୁଁ କ'ଣ କହୁଥିଲି ? କିହେ ଚରଣଦାସେ, ଟିକିଏ ମନେ ପକାଇ ଦଉନ କାହିଁକି ?

ଚରଣ : ଆଜ୍ଞା, ନେତାଙ୍କୁ ଅନୁରୋଧ କରିବେ । ଭାଷଣ ପାଇଁ ।

ବଗୁଲି : ହଁ... ହଁ... । ମୁଁ ଆମର ପ୍ରିୟ ନେତା ମହାନ୍ ଜନସେବକ ଶ୍ରୀଯୁକ୍ତ ଶ୍ରୀଳ ଗାଲମାଧବଙ୍କୁ ଅନୁରୋଧ କରୁଛି କି... । ହଇହୋ ଚରଣ, କ'ଣ ପାଇଁ ଅନୁରୋଧ କରିବି ?

ଚରଣ : ନେତା ପରା ମାଲ୍ୟାର୍ପଣ କରିବେ ।

ବଗୁଲି : ଧେତ୍ ତେରି । ସେଇଟା ପାଟିରେ ପଶିବନି । ନେତାଙ୍କୁ ଅନୁରୋଧ, ସିଏ ଏଇ ମୂରତିରେ ଫୁଲମାଳଟିଏ ଦିଅନ୍ତୁ । ଆରେ ତାଳି... ଜୋର୍‌ଦାର ତାଳି... ଦିଅବେ । ଚାହିଁଛ କ'ଣ ?

ଚରଣ : ଆଜ୍ଞା, ଟିକିଏ ଦେଖିଚାହିଁ—

ବଗୁଲି : ଓହୋ, କାଇଁକି ପାଟିଟା ଚିଲଉଛ ? ଆମ ନେତା କ'ଣ ଅନ୍ଧ ? ସିଏ କ'ଣ ଦେଖିଚାହିଁ ଆସିପାରିବେନି ?

ଚରଣ : ଆଜ୍ଞା, ଆସନ୍ତୁ ।

[ଗାଲମାଧବ ଚରଣଦାସ ହାତରୁ ଫୁଲମାଳ ନେଇ ପ୍ରତିମୂର୍ତ୍ତି ଗଳାରେ ପିନ୍ଧାଇଛନ୍ତି ]

ବଗୁଲି : ଆବେ ତାଳି ଦିଅରେ । ଧିଅରେ ଯେତେ ଜୋର୍ ଅଛି । ଚରଣ, ଫଟୋବାଲାଙ୍କୁ କୁହ । ଫୋଟୁ ଉଠାନ୍ତୁ ।

ଚରଣ : ଆଜ୍ଞା, ସାମ୍ବାଦିକମାନେ ଅଛନ୍ତି, ଟିକିଏ ସହି ସମ୍ଭାଳି କଥାବାର୍ତ୍ତା କରନ୍ତୁ । ନଇଲେ ଇଆଡୁ ସିଆଡୁ ଲେଖିଦେବେ ।

ବଗୁଲି : ଆଃ ! କାଇଁକି ସେ ନୁଖୁରା କଥାଗୁଡ଼ାକ ଶୁଣଉଛ ? ମୁଁ ସେମାନଙ୍କୁ ଡାକିଛି । ସେମାନେ ମୋ ପଇସାରେ ଖାଇଛନ୍ତି, ଆଉ ପିଇଛନ୍ତି । ତେଣୁ ମୁଁ ଯାହା କହିବି, ସେଇଆ ଲେଖିବେ ।

ଚରଣ : ନେତାଙ୍କର ଆଉରି ଦି' ଜାଗାରେ ପ୍ରୋଗ୍ରାମ୍ ଅଛି ।

ବଗୁଲି : ମାରଗୁଲି ସେ ପ୍ରୋଗାମକୁ । ଏଇଟା ମୋ ଜାଗା । ମୁଁ ଯାହା କହିବି ସେଇଆ ହବ । ହଁ, ଚରଣ, ଯା'ପରେ କ'ଣ ହବ ? ଜଲ୍‌ଦି ଜଲ୍‌ଦି କୁହ ।

ଚରଣ : ଏଜେଣ୍ଡା କାଗଜଟା ତ ଆପଣଙ୍କୁ ଦେଇଥିଲି ।

ବଗୁଲି : ଆରେ, ସେଇଟା ତ ଭାଟିରେ ରହିଗଲା । ହାଡ଼ିଆ ଟେବୁଲ ଉପରେ ଥୁଆହେଇଛି ।

ଚରଣ : କ'ଣ ଯେ ଏଇନେ ହବ ! ହଉ ଚଳେଇ ଦିଅନ୍ତୁ । ନେତାଙ୍କୁ କିଛି କହିବା ପାଇଁ ଅନୁରୋଧ କରନ୍ତୁ ।

ବଗୁଲି : ସେ କଥା କ'ଣ ସିଏ ଜାଣି ନାହାନ୍ତି ? ମୁଁ କହିଲେ ଯାଇଁ ହବ ? ହଉ ହେଲା, କହିବି ।

ଚରଣ : କୁହନ୍ତୁ... । ସମସ୍ତେ ଆମକୁ ଚାହିଁଛନ୍ତି ।

ବଗୁଲି : ଓହୋ, ଏତେ ଡର କାହିଁକି ? ମୁଁ ଯାଙ୍କୁ ଅନୁରୋଧ କରୁଛି, ସିଏ କିଛି ମଜାଳିଆ କଥା କହି ପୂରାପୂରି ଗମାତ କରିଦିଅନ୍ତୁ । ଆରେ ଆମେ ଦି'ଜଣ ସାଙ୍ଗ । ପିଲାଦିନର ସାଙ୍ଗ ।

ଚରଣ : ଆଜ୍ଞା, କୁହନ୍ତୁ ।

ଗାଇମାଧବ : ହେ ମୋର ପ୍ରିୟ ଦେଶବାସୀ ! ସମୟ ଆସିଛି । ଆପଣ ନିଜକୁ ପରୀକ୍ଷା କରି ଦେଖନ୍ତୁ । ଗଲା ସରକାର ଅମଳରେ ଆପଣଙ୍କର ଥିଲା କ'ଣ...

ବଗୁଲି : କଦଳୀଟା ଥିଲା । (ତାଚ୍ଛଲ୍ୟ)

ଗାଇମାଧବ : ଆଉ ଆଜି ଆପଣ ପାଇଛନ୍ତି କ'ଣ ? ମୁଁ ବାପୁଙ୍କ ପ୍ରତିମୂର୍ତ୍ତି ପାଖରେ ଶପଥ କରି କହୁଛି, ଏ ରାଜ୍ୟକୁ ରାମରାଜ୍ୟରେ ପରିଣତ କରିଦେବି । ଆପଣମାନେ ଖାଲି ଘିଅ ମହୁରେ ଭାସିବେ ।

ବଗୁଲି : ଯେମିତି ଝାଡ଼ା ନ ହୁଅନ୍ତି ! (ତାଚ୍ଛଲ୍ୟ)

ଚରଣ : ଟିକିଏ ଚୁପ୍ ହୁଅନ୍ତୁ ।

ଗାଲମାଧବ : ଆଜି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଉଛି । ଆପଣମାନେ ଆମ ସହିତ ହାତ ମିଳାଇ ଆଗେଇ ଆସନ୍ତୁ । ବାପୁଙ୍କ ସ୍ୱପ୍ନକୁ ସାର୍ଥକ କରିବା । ସ୍ୱାଧୀନତାର ସ୍ୱପ୍ନକୁ ସାର୍ଥକ କରିବା ।

ବଗୁଲି : ସମସ୍ତେ ଖଣ୍ଡିଏ ଲେଖା ଗାନ୍ଧି ଟୋପି ଆଉ ଗେଞ୍ଜି ଖଦିଦି କରି ପିନ୍ଧନ୍ତୁ । ଖଦି ଜିନିଷ । ଅବଶ୍ୟ ଦିହ ଟିକିଏ ଗଲୁ କରିବ ।

ଗାଲମାଧବ : ବାପୁଙ୍କର ପ୍ରିୟ ଖଦିବସ୍ତ୍ରକୁ ସମ୍ମାନର ସହିତ ଗ୍ରହଣ କରନ୍ତୁ । ଆମର ପ୍ରିୟ ଗାନ୍ଧିବାଦୀ ନେତା ନିତାଇରାମ ଆଜି ଆମ ଗହଣରେ ନାହାନ୍ତି । ସିଏ ଥିଲେ ବହୁତ କଥା ଆପଣମାନଙ୍କୁ ଶୁଣାଇଥାନ୍ତେ । ଆମମାନଙ୍କୁ ଶୋକ ସାଗରରେ ଭସାଇ ଦେଇ ସେ ଅସମୟରେ ଚାଲିଗଲେ ।

ବଗୁଲି : ଇଏ, ଆପଣ ଶୁଣଉ ନାହାନ୍ତି ! ହଁ, ଶୁଣିବାକୁ କାହାର ବେଳ ଅଛି ଯେ !

ଗାଲମାଧବ : ଆମ ଗହଣରେ ଆପଣଙ୍କ ସହରର ପ୍ରିୟ ନେତା ବଗୁଲି ଦାସେ, ସମସ୍ତଙ୍କର ଆଦରର 'ବଗୁଲାଭାଇ' ଉପସ୍ଥିତ ଅଛନ୍ତି । ତାଙ୍କ ହାତମୁଠାକୁ ଆପଣମାନେ ଟାଣ କରନ୍ତୁ । ସେ ନିଶ୍ଚୟ ଏ ଦେଶକୁ ଆଗାମୀ ୫୦ବର୍ଷକୁ ଆଗେଇ ନେବେ । ମୋର ଆଉ ବିଶେଷ କିଛି କହିବାର ନାହିଁ । ସମସ୍ତଙ୍କୁ ଧନ୍ୟବାଦ ! ଜୟହିନ୍ଦ୍... ! ଜୟ ଭାରତ !

ଚରଣ : ଆପଣମାନେ ବହୁସଂଖ୍ୟାରେ ଯୋଗଦେଇ ଆମର ପ୍ରିୟ ନେତାଙ୍କ ଭାଷଣ ଶୁଣିଥିବାରୁ ମୁଁ ଚରଣଦାସ ଆପଣମାନଙ୍କୁ ଧନ୍ୟବାଦ ଜଣାଉଛି । ଆଉ ନେତା ଶ୍ରୀଯୁକ୍ତ ଗାଲମାଧବ ଦାସ ତାଙ୍କର ବହୁମୂଲ୍ୟ ସମୟ ନଷ୍ଟକରି ଆମକୁ ଉଦ୍‌ବୋଧନ ଦେଇଥିବାରୁ ତାଙ୍କୁ ମଧ ଧନ୍ୟବାଦ ଜଣାଉଛି ।

**[ଗାଲମାଧବଙ୍କ ମଥାରେ ଗୋଟିଏ ଟେକା ପଡ଼ିଛି । ରକ୍ତ ବୋହିଛି । ସଭାସ୍ଥଳରେ କୋଳାହଳ ଲାଗିରହିଛି ]**

ଗାଳମାଧବ : ଆଃ... ଆଃ... ! ବଗୁଲି... !

[ଚରଣ ଦାସ ଗାଳମାଧବଙ୍କ ମଥାରୁ ରକ୍ତ ପୋଛିଚନ୍ତି ]

ବଗୁଲି : କାହାରିକି ଛାଡ଼ିବିନି । ଗାଲୁଆ ଓପରୁକୁ ଯିଏ ଟେକା ମାରିଛି, ତାକୁ ଠିଆଁ ଫାଡ଼ିଦେବି । ଆରେ ଗାଲୁଆ ଆମରି ଭାଇ, ଆମରି ନେତା... । ହଇରେ ତା' ଉପରକୁ ଟେକା ଫୋପାଡ଼ିବ ? ଆରେ ସିଏ ମୋ ସାଙ୍ଗଟା...

[ପୁଲିସ ସାଇରନ୍ ବାଜି ଉଠିଛି । Statue ପାଖରୁ ଯିବା ପାଇଁ ବାହାରିଛନ୍ତି ଅତିଥିବୃନ୍ଦ ]

(ଆଲୋକ ଲିଭିଛି)



## ଦ୍ୱିତୀୟ ଦୃଶ୍ୟ

ସ୍ଥାନ – ଦୋକାନ / ବରା ଦୋକାନ
ସମୟ – ଦିବସ / କାଳ
ଚରିତ୍ର – ବୃଦ୍ଧ, ରାମୁ, ଭାରତୀ

[ବିଧବା ଭାରତୀର ବରାପିଆଜି ଦୋକାନ । ଦୋକାନର ଚେହେରାରେ ବିଶେଷତ୍ୱ ନାହିଁ । ସବୁଠି ଅଭାବ ଅନଟନର ଛାପ । ଗୋଟିଏ ବଡ଼ ଥାଳିରେ କିଛି ବରା ପିଆଜି ରହିଛି । ଚୁଲି ଉପରେ ବସିଛି ଚା' କେଟଲି । ପାଖକୁ ଲାଗି ରହିଛି କେତୋଟି ଗ୍ଲାସ । ଦୋକାନରେ ବସିଛି ରାମୁ । ପୋଲିଓ ରୋଗର ଶିକାର ହେଇଛି ରାମୁ । ସିଧା ଠିଆ ହୋଇପାରୁନି । ତାର ମସ୍ତିଷ୍କ ମଧ ଠିକ୍ ଭାବେ ବିକଶିତ ହୋଇପାରିନାହିଁ । ଗୋଟିଏ ବରା ହାତରେ ଧରି ଖାଉଛି ରାମୁ । ଆସିଛନ୍ତି ବୃଦ୍ଧ ନିତାଇରାମ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ]

ରାମୁ : ଖା... ଖା... ଖାଇବ ? 'ବରା'... ?

[ବୃଦ୍ଧ କିଛି ସମୟ ପିଲାଟିକୁ ଲକ୍ଷ୍ୟ କରିଛନ୍ତି । ତାପରେ ହସିହସି କହିଛନ୍ତି ]

ବୃଦ୍ଧ : ମୋତେ ଦେଖି ତୋତେ ଡର ଲାଗୁନି ?

ରାମୁ : ତେ... ତେ... ତେମେ ବାଘ, ନା'...
ଭା... ଭା... ଭାଲୁ ?

[ପିଲାଟିର ଉତ୍ତରରେ ବୃଦ୍ଧ ପ୍ରଭାବିତ ହୋଇଛନ୍ତି ]

ବୃଦ୍ଧ : ହେଲେ ସେମାନେ ? ମୋତେ ଦେଖି ସେମାନେ ଖୁବ୍ ଡରିଗଲେ । ମୁଁ ଯେମିତି ନୂଆ କରି ଆସୁଛି !

ରାମୁ : ସେ... ସେ... ସେମାନେ କିଏ ?

ବୃଦ୍ଧ : ଏଇ ସହରର ଜନତା, ଯେଉଁମାନେ ମୋର ଖୁବ୍ ଆପଣାର, ଯେଉଁମାନଙ୍କ ସହିତ ବିତିଛି ମୋର ଅନେକ ବର୍ଷା... ବସନ୍ତ... ଆଉ ବୈଶାଖ ।

ରାମୁ : ଓ ! ଜ... ଜ... ଜନତା !

ବୃଦ୍ଧ : ହଁ (ଦୀର୍ଘଶ୍ୱାସ) ! ସେମାନେ ଏମିତି ଅଭିନୟ ଆରମ୍ଭ କଲେ, ଯେମିତିକି ପ୍ରଥମ ଥର ପାଇଁ ଗୋଟାଏ ନୂଆ ମଣିଷକୁ ଭେଟୁଛନ୍ତି ! ଯାହା ଘରକୁ ଗଲି, କବାଟ ଝରକା ବନ୍ଦ କରିଦେଲେ ।

ରାମୁ : ଭୂ... ଭୂ... 'ଭୂତ' !

ବୃଦ୍ଧ : ହଁ, ସେମାନେ ଆଖି ଆଗରେ ଯେମିତି ଗୋଟାଏ ଭୂତକୁ ଦେଖୁଛନ୍ତି ! ସମସ୍ତେ ଯେତେବେଳେ ଆଖି ଫେରେଇନେଲେ, କୁଆଡ଼େ ଆଉ ଯାଇଥାନ୍ତି ! କେଇଟା ଦିନ ଭିତରେ କ'ଣ ସବୁ ହେଇଯାଇଛି !

ରାମୁ : ଭୋ... ଭୋ... 'ଭୋକ' ହଉନି ?

ବୃଦ୍ଧ : ଭୋକ କଥା କିଏ ପଚାରେ । ମୋ ଘରବାଡ଼ି ସବୁ ଯେମିତି ଉଭାନ ହେଇଯାଇଛି !

[ଆସିଛି କହି କହି ବାହାରୁ ଭାରତୀ । ବୃଦ୍ଧଙ୍କ ଉପରେ ଦୃଷ୍ଟି ପଡ଼ିବା ମାତ୍ରେ ନିରବ ହେଇ ଯାଇଛି । ଯେମିତି ସାମନାରେ ଭୂତ ଦେଖୁଛି ]

ଭାରତୀ : କାହା ସାଙ୍ଗରେ ଗପୁଛୁ ?

ବୃଦ୍ଧ : ତୁ ବି ମା', ସେମାନଙ୍କ ସାଥିରେ – ! ମତେ ଚିହ୍ନିପାରୁନୁ ? ମୁଁ ସେହି–

ଭାରତୀ : 'ନା' ! 'ନା' ! ତାହା କେବେ ହେଇପାରେନା ।

ବୃଦ୍ଧ : ମତେ ବିଶ୍ୱାସ କର ମା' । ମୁଁ ସେହି ଖଦି ବୁଢ଼ା । ଗାନ୍ଧି ଆଶ୍ରମର ନିତାଇରାମ୍ । ମୁଁ ଭୂତ ନୁହେଁ । ମଣିଷ । ମୁଁ ମରିଯାଇଛି ବୋଲି କାହିଁକି ଭାବୁଛ ?

ଭାରତୀ : 'କିନ୍ତୁ'—

[ଭାରତୀର ପାଟି ଖନି ବାଜିଯାଇଛି । ଭୟରେ ଦେହ ତାର ଥରି ଉଠିଛି ]

ବୃଦ୍ଧ : କହିଲି ନା', ମୁଁ ଭୂତ ନୁହେଁ । ଯିଏ ଦେଖୁଛି ମୋତେ, ଦଉଡ଼ି ପଳାଇଯାଉଛି । ମୁଁ ବୁଝିପାରୁନି, ମତେ କାହିଁକି ତମେମାନେ ଏମିତି ଅବିଶ୍ୱାସ କରୁଛ । କେଇଟା ଦିନ ବାହାରେ ରହିଗଲି ବୋଲି କ'ଣ ମୋର ପରିଚୟ ବୁଡ଼ିଯିବ ?

ରାମୁ : ଅଜା... ଖା... ଖା... ଖାଇବ ?

ବୃଦ୍ଧ : ହଁ, ନିଶ୍ଚୟ ଖାଇବି । ଏ ସହରରେ ସମସ୍ତେ ମତେ ପର କରିଦେଇଛନ୍ତି । ଏକା ତୁ ତ ମତେ ନିଜର କରିଛୁ । ତୋ ହାତରୁ ଖାଇବିନି ତ, ଆଉ କାହା ହାତରୁ ଖାଇବି ?

ଭାରତୀ : 'କିନ୍ତୁ' ବାବା, ଆପଣ ତ—

ବୃଦ୍ଧ : ମୁଁ ବଞ୍ଚିଛି, ଏ କଥା ତମେମାନେ କେହି ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହଁ ?

ଭାରତୀ : ମୋର ଭୁଲ ହେଇଛି, ବାବା । ମତେ କ୍ଷମା କରି ଦିଅନ୍ତୁ । ନ ଜାଣି ମୁଁ ଆପଣଙ୍କୁ ସନ୍ଦେହ କରିଛି ।

ବୃଦ୍ଧ : ତୁ ଏକା କାହିଁକି, ଏ ସହରର ସମସ୍ତେ ମତେ ସନ୍ଦେହ ଚକ୍ଷୁରେ ଦେଖିବାକୁ ଆରମ୍ଭ କରିଛନ୍ତି । ସେମାନଙ୍କ ଆଖିରେ ମୁଁ ଯେମିତି ଅନ୍ୟ କେଉଁ ଗ୍ରହର ଜୀବ !

ଭାରତୀ : ହେଲେ ଆପଣ ଏଇନେ ରହିବେ କେଉଁଠି ? ଆପଣଙ୍କ ଘରବାଡ଼ି ତ ସରକାର ନେଇ ଯାଇଛନ୍ତି ।

ବୃଦ୍ଧ : ସେ ଅଧିକାର ସରକାରଙ୍କୁ ଦେଲା କିଏ ? ମୁଁ ବଞ୍ଚି ଥାଉଁ ଥାଉଁ ମୋ ଜାଗାବାଡ଼ି ନେଇ ଚାଲିଯିବେ ! ମୁଁ ଥାନାକୁ ଯିବି । ଦରକାର ହେଲେ କୋର୍ଟକୁ ଯିବି ।

ଭାରତୀ : 'କିନ୍ତୁ', ଯାହା ସବୁ ଘଟିଯାଇଛି, ସେ ସବୁ ତାହେଲେ କ'ଣ ମିଛ ?

ବୃଦ୍ଧ : କ'ଣ ଘଟିଛି, ମୁଁ ଜାଣେନା, କି ଜାଣିବାକୁ ଚାହେଁନା । ମୋ ଭଳି ଜଣେ ବୃଦ୍ଧ ସ୍ୱାଧୀନତା ସଂଗ୍ରାମୀର ଅବସ୍ଥା ଯଦି ଏଇଆ, ତାହେଲେ ସାଧାରଣ ଲୋକର ଅବସ୍ଥା ଆହୁରି କଣ ହୋଇନଥିବ ! ମୋ ଅଧିକାର ମୁଁ କେବେ ଛାଡ଼ିବିନି । କେବେ ନୁହେଁ ।

[କହି କହି ବିବ୍ରତ ଅବସ୍ଥାରେ ବୃଦ୍ଧ ବାହାରି ଯାଇଛନ୍ତି । ଚାହିଁ ରହିଛି ଭାରତୀ ଅପଲକ ନୟନରେ ବୃଦ୍ଧଙ୍କୁ ]

(ମଞ୍ଚ ଅନ୍ଧକାର ହୋଇଛି)

❑ ❑ ❑

# ଦ୍ୱିତୀୟ ଦୃଶ୍ୟ

ସ୍ଥାନ – ସହରର ଥାନା

ସମୟ – ଦିବସ / ଅପରାହ୍ଣ

ଚରିତ୍ର – ପରମଗୁରୁ, ମାଲପାଣି,
ବୃଦ୍ଧ ନିତାଇରାମ

[ସହରର ଜନଗହଳି ଅଞ୍ଚଳର କୌଣସି ଏକ ପୁଲିସ ଷ୍ଟେସନ । ଥାନାବାବୁଙ୍କ ଟେବୁଲ ଉପରେ ଫାଇଲ, କାଗଜ, ଟେଲିଫୋନ ଏବଂ ଅନ୍ୟାନ୍ୟ ଦରକାରୀ ଜିନିଷପତ୍ର । ପାଖରେ ଦୁଇ ତିନୋଟି ଚେୟାର । ଥାନାର ପଛପଟ କାନ୍ଥକୁ ଲାଗି ରହିଛି ହାଜତ । ଥାନାବାବୁଙ୍କ ଟେବୁଲ ପାଖରୁ ହାଜତର ବନ୍ଦୀମାନଙ୍କୁ ସହଜରେ ଦେଖିହେଉଛି । ପୁଲିସ ଇନ୍‌ସପେକ୍ଟର ପୋଷାକ ଖୋଲି ଦଣ୍ଡବୈଠକ ମାରୁଥିଲେ । କନେଷ୍ଟବଳ ମାଲପାଣି ଗଣୁଥିଲା ]

ମାଲପାଣି : 'ଏକାବନ'... 'ତେପନ'...

ପରମଗୁରୁ : 'ମାଲ୍‌ପାଣି'

ମାଲପାଣି : 'ସାର୍'...

ପରମଗୁରୁ : ଏକାବନ ପରେ 'ତେପନ' ନା 'ବାଉନ' ?

ମାଲପାଣି : ମୁଁ କ'ଣ କରିବି ସାର୍ ବେଳେ ବେଳେ ମୋର ଏମିତି ଖାଲି ଏପଟସେପଟ ହେଇଯାଉଛି । କ'ଣ ଗୋଟାଏ ହେଇଯାଉଛି !

[ଟେଲିଫୋନ ରିଙ୍ଗ୍ ହୋଇଛି । ରିସିଭର ଉଠାଇଛି କନେଷ୍ଟବଳ ମାଲପାଣି ]

ମାଲପାଣି : ସାର୍, ଧରିବି ?

ପରମଗୁରୁ : ଧର ।

ମାଲପାଣି : 'ହାଲୋ'.... । କୁହ । × ×.କ'ଣ କହିଲେ ? × × ନା.. ନା'... ଏଇଟା ଡାକ୍ତରଖାନା ନୁହେଁ, 'ଥାନା' ।

[ରିସିଭର ରଖିଛି ମାଲପାଣି ]

ମାଲପାଣି : କି ଯୁଗ ହେଲା, ସାର୍ । ଲୋକେ ଥାନାକୁ ବି ଡାକ୍ତରଖାନା ବୋଲି ଧରି ସାରିଲେଣି ।

ପରମଗୁରୁ : 'କାଉଣ୍ଟ'...

ମାଲପାଣି : 'ଚଉବନ'... 'ପଞ୍ଚାବନ'...

[ଦଣ୍ଡବୈଠକ ମାରିଚାଲିଛନ୍ତି ପୁ. ଇ. ଆସିଛନ୍ତି ବୃଦ୍ଧ । କାହାରି ତାଙ୍କ ପ୍ରତି ନଜର ନାହିଁ । ବୃଦ୍ଧ ଲକ୍ଷ୍ୟ କରିଛନ୍ତି ]

ବୃଦ୍ଧ : ଏଇଟା ଥାନା ନା' ଜିମ୍‌ନାସିୟମ୍ ?

ମାଲପାଣି : 'ଛପନ'... 'ସତାବନ'...

ବୃଦ୍ଧ : ଇନ୍‌ସପେକ୍ଟରବାବୁ, ମୁଁ ଆସିଥିଲି –

ମାଲପାଣି : 'ଅଠାବନ' ।

ବୃଦ୍ଧ : ମୋ କଥା ଟିକିଏ ଶୁଣନ୍ତୁ ।

ମାଲପାଣି : 'ଅଣଷଠି'... 'ଷାଠିଏ'...

ପରମଗୁରୁ : କ'ଣ ଦରକାର ?

ମାଲପାଣି : 'ଏକଷଠି'...

ବୃଦ୍ଧ : ମୋର କିଛି ଅଭିଯୋଗ ଅଛି । ମୁଁ ଲେଖି କରି ଆଣିଛି ।

ପରମଗୁରୁ : ଅଭିଯୋଗଟା ପଢ଼ ।

ମାଲପାଣି : ଦିଅ, କାଗଜଟା ଦିଅ ।

[ମାଲପାଣି ପଢ଼ିଛି । ପରମଗୁରୁ ଦଣ୍ଡବୈଠକ ମାରି ଚାଲିଛନ୍ତି । ଶେଷକୁ ଚିତ୍କାର କରି ଉଠିଛି ]

ମାଲପାଣି : 'ସାର୍'...

ପରମଗୁରୁ : କାହିଁକି ଏତେବଡ଼ ରଡ଼ି ଛାଡୁଛୁ ? ଘଟଣା କ'ଣ ?

ମାଲପାଣି : ସାର୍ 'ନିତାଇରାମ୍'...

[ଦଣ୍ଡବୈଠକ ବନ୍ଦ ହୋଇଯାଇଛି ହଠାତ୍ ]

ପରମଗୁରୁ : 'ନିତାଇରାମ୍'... ! କୋଉ 'ନିତାଇରାମ୍' ?

ମାଲପାଣି : ଦେଢ଼ମାସ ତଳେ ଯୋଉ ଲୋକଟା ଟ୍ରେନ୍ ଆକ୍ସିଡେଣ୍ଟରେ ମରିଯାଇଥିଲା ।

ପରମଗୁରୁ : ମାନେ ?

ମାଲ୍ପାଣି : ଯାଙ୍କ ବିବରଣୀ ଅନୁସାରେ ଇଏ ହଉଛନ୍ତି ନିତାଇରାମ୍ । ମାନେ ସେହି ନିତାଇ–

ପରମଗୁରୁ : (କାଗଜଟା ନେଇ ପଢ଼ି) ସ୍ୱାଧୀନତା ସଂଗ୍ରାମୀ ନିତାଇରାମ୍ । ନା' ତାହା କେବେ ହୋଇପାରେନା । ଲୋକଟା ଦେଢ଼ମାସ ହେଲା ମଲାଣି । ଅଥଚ... ନା... It is quite impossible !

ମାଲପାଣି : ତାଙ୍କ ଘରକୁ ସରକାର Public Library କରିଛନ୍ତି । ଆଉ ବଗିଚାଟା ପାର୍କ ହେଇଛି ।

ବୃଦ୍ଧ : ସେଇଥିଲାଗି ତ ମୁଁ ଆପତ୍ତି ଜଣାଇବାକୁ ଆସିଛି । ମୋ ଜିନିଷ ବରବାଦ୍ କରିବାକୁ ସେମାନେ କିଏ ?

ପରମଗୁରୁ : ମାଲ୍ପାଣି, ତମେ କେବେ ନିତାଇରାମଙ୍କୁ ଦେଖିଛ ?

ମାଲପାଣି : ସାର୍, ଥରେ କାହିଁକି, ଅନେକବାର ଦେଖିଛି । ହେଲେ ଇଏ ସେ ଲୋକ ନୁହେଁ । ଏଇଟା ପକ୍କା ଚାରିଶବିଶ୍ ।

ବୃଦ୍ଧ : ମତେ ବିଶ୍ୱାସ କରନ୍ତୁ, ମୁଁ ନିତାଇରାମ୍ । ଗାନ୍ଧିଜୀଙ୍କ ସାଙ୍ଗରେ ବୁଲିଛି । ପିକେଟିଙ୍ଗ୍ କରିଛି । ବ୍ରିଟିଶ ପୁଲିସ୍‌ର ମାଡ଼ ବି ଖାଇଛି । ପିଠିଟା ଦେଖୁନାହାନ୍ତି । ଚିହ୍ନ ବି ଥିବ !

ପରମଗୁରୁ : ଠିକ୍ ଅଛି, ଦେଖିବା ।

ମାଲପାଣି : ସାର୍ ମତେ କାହିଁକି କଥାଟା, ମାନେ କେମିତି କେମିତି ଲାଗୁଛି । ଝିନ୍‌ଝଟ ଭିତରେ ଝମେଲା !

ପରମଗୁରୁ : ମୋର ବି ସନ୍ଦେହ ହେଉଛି ।

ମାଲପାଣି : ସାର୍ ଇଏ ଡୁପ୍ଲିକେଟ୍ ନିତାଇରାମ୍ । ହାଜତରେ ପୂରେଇ ବହେ ଛେଚିଦେଲେ ଅସଲ କଥାଟା ଆପେ ବାହାରି ଆସିବ । ମାଡ଼କୁ ମହାଦେବଙ୍କର ଡରଟି ।

ବୃଦ୍ଧ : ଆପଣମାନେ ମତେ ବିଶ୍ବାସ କରନ୍ତୁ ।

ମାଲପାଣି : ସାର୍, ଲାସ୍ ପାଖରୁ ଖଦଡ଼ ବ୍ୟାଗ୍, ଚଷମା, ଛତା, ଡାଇରି ମୁଁ ନିଜେ ସଂଗ୍ରହ କରିଛି । ସେ ସବୁ କ'ଣ ମିଛ ? ଆଉ ଯିଏ ଯାହା ଆସି କହିଦବ, ଆମେ ବିଶ୍ଵାସ କରିଯିବା ?

ପରମଗୁରୁ : ଠିକ୍ ଅଛି । ନିତାଇରାମ୍‌ର କେଶ୍ study ଫାଇଲ୍‌ଟା ବାହାର କର । ଫଟୋ ଆଉ details ନିଶ୍ଚୟ ଥିବ !

ମାଲ୍‌ପାଣି : ହଁ, ସାର୍ । ମୋ ମନ କହୁଛି, ଏଇଟା ଡୁପ୍ଲିକେଟ୍ । ହଇହେ, ବୁଢ଼ା ଦିନେ ବି ଏ ଦୋନମ୍ବରୀ କାରବାର !

ବୃଦ୍ଧ : ଆପଣମାନେ କ'ଣ କହିବାକୁ ଚାହୁଁଛନ୍ତି ?

ପରମଗୁରୁ : ମାଲ୍‌ପାଣି, ଫାଇଲ୍‌ଟା ବାହାର କର ।

ମାଲପାଣି : ଆଣୁଛି ସାର୍ ।

[ଫାଇଲ ଖୋଜିଛି ମାଲ୍‌ପାଣି ]

ପରମଗୁରୁ : ହଁ, କହି ଦଉଛି । ପୁଲିସ୍ ସାଙ୍ଗରେ ଖେଳିବାକୁ ଚେଷ୍ଟା କରୁଥିଲେ ପରିଣାମ ଭୟାବହ ହବ । Mind it !

ବୃଦ୍ଧ : I know very well. Better, you search your documents.

ପରମଗୁରୁ : ମାନେ, you know English !

ବୃଦ୍ଧ : ଇନ୍‌ସପେକ୍ଟର ଆପଣଙ୍କ ବାପା ମାନେ ସଦାଶିବ ବାବୁ ମୋ କ୍ଲାସ୍‌ମେଟ ଥିଲେ । ସିଏ ଚାକିରି କଲେ । ଆଉ ମୁଁ ସଂଗଠନ କାମରେ ରହିଗଲି ।

ମାଲପାଣି : ପାଇଛି ସାର୍... (ଫାଇଲ୍ ଦେଖି) 'ସାର୍'... !

ପରମଗୁରୁ : କ'ଣ ହେଲା ?

ମାଲପାଣି : ଫଟୋ ତ ପୂରାପୂରି ମିଶିଯାଉଛି !

ପରମଗୁରୁ : No... It can't be ! It can't be !

[ଫାଇଲ ନେଇ ଇନ୍‌ସପେକ୍ଟର ନିଜେ ଦେଖୁଛନ୍ତି ]

ବୃଦ୍ଧ : ଇନ୍‌ସପେକ୍ଟର, ଆଉ କିଛି ଦରକାର ?

ପରମଗୁରୁ : I am sorry, ସାର୍ । ମୁଁ ଅଯଥାରେ ଆପଣଙ୍କୁ–

ବୃଦ୍ଧ : That is reality ! ଏ କଥା ଗାନ୍ଧିଜୀ ଆମକୁ ଶିଖେଇଥିଲେ । ସେ ସବୁ ବହୁତ କଥା । ତମେ କେମିତି ବା ବୁଝିବ !

ମାଳପାଣି : ସାର୍, ଟାଉନହଲ୍ ରୋଡ୍‌ରେ ନିତାଇରାମଙ୍କର ସେ ଯେଉଁ statueଟା ତିଆରି ହେଉଛି, ସେଇଟା କ'ଣ ହବ ?

ପରମଗୁରୁ : ହେଲେ, ଏସବୁ– ? No... No... ! (ବିଚଳିତ ଭାବ)

ବୃଦ୍ଧ : ଦେଢ଼ମାସ ଭିତରେ ସବୁକିଛି ଓଲଟପାଲଟ ହୋଇଯାଇଛି ।

ପରମଗୁରୁ : ରାଜଧାନୀର ମେନ୍‌ରୋଡ୍ ବି ଆପଣଙ୍କ ନାମରେ ନାମିତ ହୋଇଛି । ନିଜେ ମୁଖ୍ୟମନ୍ତ୍ରୀ ତାକୁ ଉଦ୍‌ଘାଟନ କରିଛନ୍ତି ।

ମାଳପାଣି : ସାର୍, ଏଇନେ ତାହେଲେ ହବ କ'ଣ ?

ପରମଗୁରୁ : ମୋ ମୁଣ୍ଡ କିଛି କାମ କରୁନି ।

ମାଳପାଣି : ସାର୍, ଫୋନ୍ କରିବି ? ନେତାଙ୍କୁ ?

ପରମଗୁରୁ : ଆସେମ୍ବ୍ଲି ଚାଲିଛି । କେହି ଧରିବେନି ।

ମାଳପାଣି : ତାହେଲେ ? ପୁଣି ଝିନଝଟ ଭିତରେ ଝମେଲା !

ବୃଦ୍ଧ : ଗାନ୍ଧିଜୀ ଇଂରେଜମାନଙ୍କ ସହିତ ଲଢ଼ି ସ୍ୱରାଜ୍ୟ ଆଣିଥିଲେ ଭାରତବାସୀଙ୍କ ପାଇଁ । ତାଙ୍କ ଧାରଣା ଥିଲା, ଭାରତବାସୀ ଶାନ୍ତିରେ କାଳ କାଟିବେ । ବାଃ... ବାଃ ରେ ଗଣତନ୍ତ୍ର !

ପରମଗୁରୁ : ଆପଣ ମୋ ଉପରେ ଭରସା ରଖନ୍ତୁ । ଯା'ର ନିଶ୍ଚୟ ଗୋଟାଏ ସମାଧାନ ହେବ ।

ବୃଦ୍ଧ : କି ସମାଧାନ ହବ ? ଯାହା ଜଣାପଡୁଛି, ମୋ 'ମୃତ୍ୟୁ'ରେ ସବୁର ସମାଧାନ ବୋଧହୁଏ ହେଇଯିବ !

ପରମଗୁରୁ : ଅଙ୍କଲ, ଆପଣ ମୋ ବାପା ସମାନ । ମୁଁ କିଛି ଗୋଟାଏ ସୂତ୍ର ନିଶ୍ଚୟ ବାହାର କରିବି ।

ମାଲପାଣି : ସାର୍, ବଗୁଲି ଦାସକୁ ଫୋନ୍ କରିବି ?

ପରମଗୁରୁ : ସେଇଟା ଗୋଟାଏ scoundrel ! ଇଲେକ୍‌ସନ୍‌ରେ ମାତିଛି । ଯଦି ଜିତିଯାଏ, ଦେଶ ବୁଡ଼ିଲା ଜାଣ ।

ମାଲପାଣି : ଗାଲମାଧବ ଦାସେ କ'ଣ ଏ କଥା ଜାଣିପାରୁନାହାନ୍ତି ?

ପରମଗୁରୁ : ବଗୁଲି ଦାସ ନଥିଲେ ଗାଲମାଧବ କୋଉଠୁ ନେତା ହେଇପାରିଥାନ୍ତା ? ନେତା ତ ନେତା...ଏକାଥରେ ମୁଖ୍ୟମନ୍ତ୍ରୀ !

ବୃଦ୍ଧ : ଗାନ୍ଧିଜୀଙ୍କ ନାଁରେ ଇଲେକ୍‌ସନ ଜିତିଲେ । ତାଙ୍କରି ନାଁକୁ ବିକି କିଣି ଖାଇବେନି ତ ଆଉ କ'ଣ କରିବେ !

ମାଲପାଣି : ହଁ, ସେଇଆ ନୁହଁ ତ ଆଉ କ'ଣ । ଏ ଦେଶର ଜନତା' ତ ଫମ୍ପା ଢୋଲ । ଯୁଆଡ଼େ ବାଡ଼େଇଲେ ଢୋ । ଗୁଡ଼ାଏ ଅର୍ଥହୀନ ଶବ୍ଦ ପାଇଁ ସେମାନଙ୍କର ସୃଷ୍ଟି ।

ବୃଦ୍ଧ : ପଚାଶବର୍ଷ କ'ଣ କମ୍ ହେଲାଣି ।

ପରମଗୁରୁ : 'ଅଙ୍କଲ'...

ବୃଦ୍ଧ : ମଉସା ଡାକିଲେ ଖୁସିହେବି, ବାବା ।

ପରମଗୁରୁ : Sorry, ମଉସା । ଆପଣ ଏଇନେ ଯିବେ କୁଆଡ଼େ ?

ବୃଦ୍ଧ : ଟ୍ରେନ୍‌ରୁ ଓହ୍ଲାଇ ଘରକୁ ଗଲି । ଯାହାକୁ ପଚାରିଲି, ସମସ୍ତେ ମତେ ଦେଖି ଡରି ଦଉଡ଼ି ପଳାଇଲେ । ତାପରେ ଏଠାକୁ ଆସିବା ଛଡ଼ା ମୋର ଅନ୍ୟଗତି ନଥିଲା ।

ପରମଗୁରୁ : ଯେ ପର୍ଯ୍ୟନ୍ତ କିଛି ଗୋଟାଏ ବନ୍ଦୋବସ୍ତ ନ ହେଇଚି, ସେ ପର୍ଯ୍ୟନ୍ତ ଆପଣ ମୋ କ୍ୱାଟରରେ ରହିଥାନ୍ତୁ । ଥାନା ପଛଟା ମୋ କ୍ୱାଟର ।

ବୃଦ୍ଧ : ବାପା ଏଇଠି ରହୁଛନ୍ତି ?

ପରମଗୁରୁ : ଗାଁରେ ରହୁଛନ୍ତି । ଏଠି ମୋ ସ୍ତ୍ରୀ ରାଧା ଆଉ ଟିକି ପୁଅ ପ୍ରୀତମ୍ ।

ମାଲପାଣି : ସାରଙ୍କ ଘରେ ଆପଣଙ୍କର କିଛି ଅସୁବିଧା ହବନି ।

ବୃଦ୍ଧ : ବ୍ରିଟିଶ ସହିତ ଯିଏ ଲଢ଼ିଛି, ତାର ପୁଣି ଅସୁବିଧା କ'ଣ ? ଗାନ୍ଧି ମହାତ୍ମା ଆମକୁ ସବୁ ଶିଖେଇ ଦେଇ ଯାଇଛନ୍ତି । କୋଉଠି କେମିତି କିପରି ଚଳିବାକୁ ହେବ ।

ମାଳପାଣି : ଗାନ୍ଧି ସମସ୍ତଙ୍କୁ ଶିଖେଇଲେ । ହେଲେ ଇଏ ବଗୁଲା ଆଉ ଗାଲୁଆଙ୍କୁ କିଛି ଶିଖେଇଲେନି ? ରାଇଜଟାକୁ ତ ଚଳୁ କରିସାରିଲେଣି । ଆଉ କ'ଣ ଚାହୁଁଛନ୍ତି, କେଜାଣି !

ବୃଦ୍ଧ : ଅପେକ୍ଷା କର । ସମୟ ସବୁର ସମାଧାନ କରିବ । ସବୁ ପୂର୍ଣ୍ଣିମାରେ ଜହ୍ନରାତି ନଥାଏ, କି ସବୁ ଜହ୍ନରାତିଗୁଡ଼ାକ ପୂର୍ଣ୍ଣିମା ନୁହେଁ ।

[ଟେଲିଫୋନ କରିଛନ୍ତି ପରମଗୁରୁ ]

(ମଞ୍ଚ ଧୀରେ ଧୀରେ ଅନ୍ଧକାର ହୋଇଛି )

❑❑❑

# ଚତୁର୍ଥ ଦୃଶ୍ୟ

ସ୍ଥାନ – ସେହି ପୁରୁଣା ଛକ
ସମୟ – ମୁହଁସଂଜ ବେଳ
ଚରିତ୍ର – ରାମୁ, ବଗୁଲି, ଭାରତୀ

[ସହରର ସେହି ପୁରୁଣା ଛକ । ପ୍ରତିମୂର୍ତ୍ତି ସେଇଠି ସେମିତି ଚାହିଁରହିଛି ସହରର କଳୁଷିତ ଜନଜୀବନ ଆଡ଼େ । ଏଇ ପ୍ରତିମୂର୍ତ୍ତି ପାଖରେ ଘଟିଯାଇଛି ଅନେକ ଅଘଟଣ । ମାତ୍ର ସକାଳ ହେଲାବେଳକୁ ସବୁ ଯେମିତି ଠିକ୍ । କିଛି ଘଟିନି କି ଘଟିବାର ନାହିଁ । ପ୍ରତିମୂର୍ତ୍ତି ନୀରବ । ସମୟ ସାମାନ୍ୟ ମୁହଁ-ସଞ୍ଜ ବେଳ । ଢଳି ଢଳି ଆସିଛି ପ୍ରତିମୂର୍ତ୍ତି ପାଖକୁ ବଗୁଲି ଦାସ । ପାଦ ଠିକ୍ ଜାଗାରେ ପଡୁନି । ଧକ୍କା ଖାଇଛି ପ୍ରତିମୂର୍ତ୍ତି ଦେହରେ । ପଡ଼ିଯାଇଛି । ପୁଣି ଉଠିଛି ]

ବଗୁଲି : ଏଁ, କିଏ ଭାଇ ? କାହିଁକି ବାଟ ବନ୍ଦ କରୁଛ ? ଏ ବଗୁଲି ଦାସ କାହାରି କିଛି କ୍ଷତି କରିନି କି କରିପାରିବନି । ସମସ୍ତେ କହୁଛନ୍ତି, ମୁଁ କୁଆଡ଼େ ମଦୁଆ । ହେଲେ ମୁଁ ପଚାରୁଛି, ମଦୁଆଠାରୁ ଆଉ ବେଶି ସଚ୍ଚୋଟ ମଣିଷ ଏ ଦୁନିଆରେ ଦେଖେଇଦବ ମତେ ? ମୁଁ ଜାଣେ, ପାରିବନି । ଏମାନେ ଖରାପ ମଣିଷ ନୁହଁନ୍ତି ।

[ପ୍ରତିମୂର୍ତ୍ତିର ବେସ୍ (Base)କୁ ଧରି ଉଠିବାକୁ ଚେଷ୍ଟା କରିଛି ବଗୁଲି ଦାସ । ମାତ୍ର ପୁଣି ପଡ଼ିଯାଇଛି । ଉପରକୁ ମୁହଁ ଟେକିଛି । ଦୃଷ୍ଟି ପଡ଼ିଛି ପ୍ରତିମୂର୍ତ୍ତି ଉପରେ ]

ବଗୁଲି : (ଆଖି ମଳିଛି), ଏଁ ବାପୁ ! ରାତିଟାରେ ତମେ ଏକଲା ଏଠି କ'ଣ କରୁଛ ? କ'ଣ କିଛି ଦୋ'ନମ୍ବରୀ କାରବାର କରୁନ ତ ? ସତ କହୁଛି, କାହାରିକୁ କହିବିନି । ହେଲେ ଫିପ୍‌ଟି ଫିପଟି । ରାଜି ତ ? ବାପୁ, ଏ ଦେଶର ଜ୍ଞାନୀ ପଣ୍ଡିତଗୁଡ଼ା କହୁଛନ୍ତି, ଦେଶଟା କୁଆଡ଼େ ନଷ୍ଟ ହୋଇଗଲାଣି ! କିଛି ଟୋପିବାଲାଏ କହୁଛନ୍ତି, ମଦ କାରବାର ବନ୍ଦ କରିଦେବେ । କ'ଣ ସେଇଟା

ବନ୍ଦ ହେଇଗଲେ ଦେଶଟା ସୁଧୁରିଯିବ ? ଆରେ ଗାନ୍ଧି ମହାତ୍ମା କରିପାରିଲାନି । ଆଉ ତମେ ସବୁ କୋଉ ମଣିଷରେ ଗଣା ଯେ...

[ଗୋଟିଏ ଗାଡ଼ିର ଲାଇଟ୍ ପଡ଼ିଛି ବଗୁଲି ଉପରେ ]

ବଗୁଲି : ଆବେ ଦେଖିକରି ଗାଡ଼ି ଚଲା ... ବାପୁ, ତମ ସାଙ୍ଗରେ ମୋର ଗୋଟାଏ ଚୁକ୍ତି ଅଛି । ମତେ ଖାଲି ମୁନିସିପାଲିଟି ଇଲେକ୍‌ସନଟା ଜିତେଇ ଦିଅ । ମୋ କରାମତି ମୁଁ ଦେଖେଇ ଦେବି । ଯାହା ମାଗିବ, ଦେବି । ଇଏ ବଗୁଲି ଦାସର ୱାଦା... ପକ୍କା ୱାଦା । ସଲାମ୍... ସଲାମ୍... ବାପୁ... । ଫିର୍ ମିଲେଙ୍ଗେ...

[ସଲାମ୍ ଜଣାଇ ଟଳି ଟଳି ଚାଲିଯାଇଛି ବଗୁଲି ଦାସ । ବରା ଖାଇ ଖାଇ ଆସିଛି ରାମୁ । ବୟସ ହୋଇଥିଲେ ବି ପିଲାଳିଆମି ଯାଇନି ]

ରାମୁ : ବାପୁ, ଏ ବାପୁ ! ଖାଇବୁ ? 'ବରା'... । ତୁ କିଛି କହୁନୁ କାହିଁକି ? ବାପୁ, ତୋ ଫୁଲମାଳଟା ଭାରି ଭଲ ହେଇଛି ।

[ଫୁଲମାଳଟା ଆଣି ନିଜ ବେକରେ ପକାଇଛି ରାମୁ । ମୂର୍ତ୍ତିକୁ ଚାହିଁ ତାର ଭାବ ଆଣିବାକୁ ଚେଷ୍ଟା କରିଛି । ବାରମ୍ବାର ଚେଷ୍ଟା କରି ଚାଲିଛି । ଭାବ ମିଶୁନଥିବାରୁ ଦୁଃଖ କରିଛି ।]

ରାମୁ : ହଉନି... । ନା'... ହଉନି... । ... ହଉନି ତ ।

[ରାମୁକୁ ଖୋଜି ଖୋଜି ଆସି ପହଞ୍ଚିଛି ତାର ମା' ଭାରତୀ]

ଭାରତୀ : ରାମୁ, ତୁ ଆସି ଏଠି । ମୁଁ ତୋତେ ଦୁନିଆ ଆଡ଼େ ଖୋଜି ସାରିଲିଣି । କ'ଣ କରୁଛୁ ଏଠି ?

ରାମୁ : ରହ । ପାଟି କରନା ।

ଭାରତୀ : ଆରେ କ'ଣ ହଉଛି, ଇଏ ?

ରାମୁ : ହଉନି ତ ।

ଭାରତୀ : କ'ଣଟା ହଉନି ?

ରାମୁ : ତାକୁ ଦେଖୁନୁ । ସିଏ କେମିତି ଠିଆ ହେଇଛି ।

ଭାରତୀ : ତୁ ଚେଷ୍ଟାକଲେ ବି ତା' ଭଳି ହେଇପାରିବୁନି ।

ରାମୁ : ମୁଁ ହେବି । ହେବି... । ହଁ... ହେବି ।

ଭାରତୀ : ସିଏ ତ ମଣିଷ ଭିତରେ ମଣିଷ । ଆଉ ତୁ—?

ରାମୁ : ତାକୁ ବରା ଯାଚିଲି । ନେଲାନି... ।

ଭାରତୀ : ଜୀବନଯାକ ସିଏ କାହାରିଠାରୁ କିଛି ନେଇନି । ବରଂ ବହୁତ କିଛି ଦେଇଯାଇଛି । ବହୁତ... ।

ରାମୁ : କ'ଣ ଦେଇଛି ? 'ବରା' ନା 'ପିଆଜି'... ?

ଭାରତୀ : ତୁ କେମିତି ଜାଣିବୁ, ସିଏ କ'ଣ ଦେଇଛି । ସିଏ ବଡ଼ମଣିଷ । ତା' ସାଙ୍ଗରେ ତୁ ସମାନ ହବାକୁ ଚେଷ୍ଟା କରନି ।

ରାମୁ : ହେବି... ହେବି... । ଅଲବତ୍ ହେବି... ।

ଭାରତୀ : ଦେଖୁନୁ ସତ୍ୟ... ଶାନ୍ତି... ଅହିଂସା ବାଣ୍ଟି ବାଣ୍ଟି ସିଏ କେମିତି ପଥର ହେଇଯାଇଛି ।

ରାମୁ : ମୁଁ ସତ କହୁଛି । ମୁଁ ବି ପଥର ହେବି... । ତାରି ଭଳି ।

ଭାରତୀ : ନା'ରେ... ତା'ପରି ହେବା ଏତେଟା ସହଜ ନୁହେଁ ।

ରାମୁ : ବାପୁ... ଏ ବାପୁ... । ମୁଁ ହେବି... ହେବି... । ତୋ' ଭଳିଆ ।

ଭାରତୀ : ତତେ କେମିତି ବୁଝେଇବି । ଏ ଦୁନିଆରେ ସବୁ ମିଳିବ । ହେଲେ ଭଲ ମଣିଷଟିଏ ମିଳିବା ଭାରି କଷ୍ଟ ।

ରାମୁ : ମୁଁ ହେବି । ହେବି... । ମଣିଷ... । ଭଲ ମଣିଷ ।

ଭାରତୀ : ମୁଁ ଜାଣିଛି, ତୁ କେବେ ବି ଖରାପ ହେଇପାରିବୁନି । ହଉ ଆ । ଘରକୁ ଯିବା ।

ରାମୁ : 'ବାପୁ'... ଯିବା ଆ... ।

ଭାରତୀ : ସିଏ କୁଆଡ଼େ ଯିବ ? ସିଏ ଚାଲିଗଲେ ଏ ସହରର ମଣିଷଗୁଡ଼ାଙ୍କୁ ବାଟ ଦେଖାଇବ କିଏ ? ହଉ ଯିବା ଚାଲେ (ଫୁଲମାଳ ଦେଖି) ଆରେ ବାପୁର ଫୁଲମାଳଟା ନେଇଯିବୁ ନା' କ'ଣ ?

ରାମୁ : ଦେବିନି । ଏଇଟା ମୋର ।

ଭାରତୀ : କହୁ ନ ଥିଲି, ବାପୁ କାହାରିଠାରୁ କିଛି ନେଇନି । ଦେଇଯାଇଛି ।

**[ରାମୁ ମା'କୁ ଚାହିଁଛି । କିଛି ବୁଝିପାରିନି ]**

ଭାରତୀ : ଚାହିଁଛୁ କ'ଣ ? ଫେରାଇ ଦେ'... । ମୋ ଧନଟା ପରା ।

**[ରାମୁ ଫୁଲମାଳଟି ପୁଣି ପିନ୍ଧାଇ ଦେଇଛି ]**

ରାମୁ : ବାପୁ, ଯାଉଛି । କାଲି ଆସିବି । ଖେଳିବା ।

**[ଉଭୟ ମା' ଓ ପୁଅ ଚାଲି ଯାଇଛନ୍ତି]**

(ମଞ୍ଚ ଅନ୍ଧକାର ହୋଇଛି)

❑❑❑

## ପଞ୍ଚମ ଦୃଶ୍ୟ

ସ୍ଥାନ — ସହରତଳି ସେହି ଥାନା

ସମୟ — ରାତି ବାରଟା

ଚରିତ୍ର — ମାଲପାଣି, ସଲିମ୍

[ସେହି ପୁରୁଣା ଥାନା । ଥାନାର ସାଜସଜ୍ଜା ଅପରିବର୍ତ୍ତିତ । ସମୟ ରାତି ବାରଟା ପାଖାପାଖି । ଥାନାବାବୁ ପରମଗୁରୁ ନାହାନ୍ତି । ମହା ଆରାମ୍‌ରେ ଶୋଇଯାଇଛି ଟେବୁଲ ଉପରେ କନେଷ୍ଟବଳ ମାଲପାଣି । ଘୁଙ୍ଗୁଡ଼ି ଶବ୍ଦରୁ ରାତିର ବୟସ ସ୍ପଷ୍ଟ ଭାବେ ଜାଣି ହେଉଛି । ମଞ୍ଚରେ ପତଳା ଆଲୋକ । ହଠାତ୍ କିଛି ଗୋଟାଏ ଶବ୍ଦ ଶୁଣାଯାଉଛି । ନିଦ ଭାଙ୍ଗି ଯାଉଛି ମାଲପାଣିର । ନିଜକୁ ସାନ୍ତ୍ୱନା ଦେଉଛି ମାଲପାଣି ]

ମାଲପାଣି : ନା' ମାଲପାଣି, ନା ! ଏମିତି ଢୁଳେଇଲେ କାମ ଚଳିବନି । କୋଉ ମୁହୂର୍ତ୍ତରେ ଆସି ଗାଡ଼ି ଲାଗିଯାଇପାରେ ! କି ଯୋଗରେ ମଣିଷ ଇଏ ପୁଲିସ ଚାକିରି କଲା ଯେ, ରାତିଦିନ ଖଟିଖଟି ମଲା ।

[କାନ୍ଥ ଘଣ୍ଟାରେ ବାରଟା ବାଜିଲା ]

ମାଲପାଣି : ନା'... ! ଏତେ ରାତି ହେଲାଣି । ଆଉ କେହି ଆସିବେନି ।

[ଟେବୁଲ ଉପରେ ମଥା ରଖି ପୁଣି ଥରେ ଶୋଇଯାଉଛି ମାଲପାଣି । ଘୁଙ୍ଗୁଡ଼ି ଶବ୍ଦ ]

[ଥାନା ଭିତରେ ପ୍ରବେଶ କରିଛି ସଲିମ୍ । ଚାରିଆଡ଼େ ଆଖି ବୁଲେଇ ନେଇଚି । ଚୁଟ୍‌କି ବଜେଇଛି । କନେଷ୍ଟବଳ ଉଠିନି । ବିରକ୍ତ ହୋଇ ଉଠିଛି ଗୁଣ୍ଡା ସଲିମ୍ ]

ସଲିମ : ଥାନାଟାକୁ ବୋପା ଅଜାର ଜାଗିରି ପାଇଲାଣି ! ପୁଅ କେତେ ଜୋର୍‌ରେ ଘୁଙ୍ଗୁଡ଼ି ଛାଡୁଛି ! ଆବେ ଚନାଚୁର୍ କେ ବାଦଶା'... । ଉଠ୍...

ମାଲପାଣି : (ତଥାପି ନୀରବ)

[କାନରେ କାଗଜ ମୋଡ଼ି ପୂରାଉଛି ସଲିମ୍ ]

ମାଲପାଣି : ଆଃ, କାହିଁକି ଡିଷ୍ଟବ କରୁଛ ?

ସଲିମ : କନେଷ୍ଟବଳ ବି ଇଂରାଜୀ ଚୋବଉଛି । ଆବେ ଉଠୁଛୁ ନା' ନାହିଁ ? ଗଣ୍ଡିରୁ ମୁଣ୍ଡଟାକୁ ଅଲଗା କରିଦେବି ।

[ଆଖି ମଳି ମଳି ଉଠିଛି ମାଲପାଣି ]

ମାଲପାଣି : ତେମେ ଏତେ ରାତିରେ କିଏ ବାବା ରଫୁଚକ୍କର ? ମଣିଷକୁ ଟିକିଏ ଶାନ୍ତିରେ ଶୋଇବାକୁ ଦବନି ?

ସଲିମ : ଆବେ, ଇନ୍‌ସପେକ୍ଟର କାହିଁ ?

ମାଲପାଣି : କ'ଣଟା ଦରକାର, କହୁନ । ଇଏ ମାଲ୍‌ପାଣି ବି ଛୋଟିଆ ମଣିଷ ନୁହଁ । ଚାକିରିଟା ସିନା ଛୋଟ, ହେଲେ ଫୁଲ୍ ପାବାରବାଲା ମଣିଷ ।

ସଲିମ : ଚୁପ୍‌ବେ । ଯେତିକି ପଚାରୁଛି ସେତିକିର ଉତ୍ତର ଦେ । ଥାନାବାବୁ କାହିଁ ?

ମାଲପାଣି : ବାବୁ ତ ବାବୁ ଏ ମାଲପାଣି ବାବୁ ! ଆଉ ପୁଣି ବାବୁ କିଏ ? କ'ଣ କରିବି କହୁନ । କାହିଁକି ଝିନ୍‌ଝଟ ଭିତରେ ଝମେଲା ପୂରଉଛ ?

[ସଲିମ୍ ଦାନ୍ତ କଡ଼ମଡ଼ କରି ଚାହିଁଛି ]

ସଲିମ : ତୁଟା ପକ୍କା ହାରାମି, ସିଧା ବାଟରେ ଉଠିବୁନି । ଦେଖୁଛୁ ଏଇଟାକୁ ।

[ଭୁଜାଲି କାଢ଼ିଛି]

ମାଲପାଣି : ନାଇଁ, ଥାଉ... । ସେଇଟାକୁ ମୋତେ ବାହାର କରିବା ଦରକାର ନାଇଁ । ହେଲେ କଥାଟା–

ସଲିମ : କ'ଣ କଥାଟା ?

ମାଲପାଣି : ଥାନା ଭିତରେ ପଶି, ପୁଣି ପୁଲିସ୍‌କୁ ଧମକେଇବ ?

ସଲିମ : ଆବେ ତୁ କେବେଠାରୁ ପୁଲିସ୍ ହେଲୁଣି ? ତୁ ଟା ସେହି କନେଷ୍ଟବଳ । ଚିନିବୁହା ବଳଦ । ବୁଝିଲୁ ।

ମାଲପାଣି : ହଁ ।

ସଲିମ : କ'ଣ ହଁ ?

ମାଲପାଣି : ବଳଦ । ନା' ଷଣ୍ଢରେ ଗଲି ନା' ଗାଈରେ । ତେବେ ବି ଅଣ୍ଡିରିପୁଅ । ପାରିବି ।

ସଲିମ : ତୁଟା ତୁଚ୍ଛା ମାଇଚିଆ ।

ମାଲପାଣି : ହଁ, ହେଇଥିବ । ଆଜିକାଲି ବେଳକାଳ ଯାହା ହେଲାଣି, ଲୋକଗୁଡ଼ାକ ତ ସେଇଆ ହେଇଯାଉଛନ୍ତି ।

ସଲିମ : କଥାଟା ବେଶ୍ ଚିକ୍କଣ କହୁଛୁ । ବଟି କେତେ ନଉଛୁ ?

ମାଲପାଣି : ଯେଡ଼େଘର ସେଡ଼େ ଫୋର । ଏ ପଟେ ଆସୁଛି, ସେପଟେ ଯାଉଛି । ମୁଁ କେବେ ମିଛ କହେନି । ଆଗରୁ ଏ ମାଲପାଣିର ପକେଟ ଭଲ ଗରମ ହଉଥିଲା । ଇଏ ନୂଆବାବୁଟା ଆସିଲା ଦିନଠାରୁ ଖଡ଼ାନାସ୍ତି ।

ସଲିମ : ଚେହେରା ତ କାହିଁ କହୁନି । ପିଲାପିଲି କେତୋଟି ?

ମାଲପାଣି : କାହିଁକି ସେ କଥା ଆଉ ପଚାରୁଛନ୍ତି ? ମାତ୍ର ସାତୋଟି ସନ୍ତାନ । ଏଇଟା ବି ଫାଇନାଲ୍ ନୁହଁ । ଦେବକୀର ଅଷ୍ଟମ ଗର୍ଭରେ ଏଥର ନଟନାଗର କୃଷ୍ଣ ଆସୁଛନ୍ତି । ୟେ' ମୁଁ ତ ଏତେ କଥା କହିଗଲିଣି, ତମେ କିଏ ? କଉଁଠୁ ଆଇଲ ? ଏ ସବୁ କଥା ତ ମୁଁ ପଚାରିନି ।

ସଲିମ : ସଲିମ୍ ନାଁ ଶୁଣିଛୁ ?

ମାଲପାଣି : ସିଏ ଇତିହାସଟା ମୋର ଜମା ମନେରହେନା । କୋଉ ଗୋଟାଏ ମିଆଁ ରଜାର ପୁଅ ହେଇଥବ !

ସଲିମ : ବାଜେ କଥା ବନ୍ଦକର । ଜିଭ ଓପାଡ଼ି ଦେବି । କାଳିଗଳି ନାଁ ଶୁଣିଛୁ ? କଟକ ଆଉ କାଳିଗଳି !

ମାଲପାଣି : ମାହାପ୍ରୁ, ଆଉ ବୁଝିବାକୁ ମୋର ବାକି ନାହିଁ । ତମ ଚାରିଖୁରାକୁ ଜୁହାର । ଏ ଅଧୀନ କି ସେବା କରିପାରିବ ? ମତେ ଖବର ଦେଇଥିଲେ ମୁଁ କ'ଣ ଯାଇ ନଥାନ୍ତି !

ସଲିମ : ଥାଉ, ଭାଷଣ ବନ୍ଦକର । ମତେ ଏନକ୍ୱାରୀ ପାଇଁ ପଠେଇଛନ୍ତି ନେତା ।

ମାଲପାଣି : ଇଏ ଗା... ଗା... ଗାଲମାଧବ ବାବୁ ପଠେଇଛନ୍ତି । ସେ କଥା ଆଗରୁ କହୁନାହାନ୍ତି । ମୁଖ୍ୟମନ୍ତ୍ରୀ କହିବେ । ତାଙ୍କ କଥା ରହିବନି ?

ସଲିମ : ଇନିସପେକ୍ଟର କାହିଁ ?

ମାଲପାଣି : କ୍ୱାଟର୍‌ରେ ଅଛନ୍ତି । ଡାକି ଦେବି ?

ସଲିମ : ଡାକିବା ଦରକାର ନାହିଁ । କହିଦବୁ, ଏ ଜାଗାରେ ସିଏ ବହୁତ ଦିନ ହେଲା ରହିଗଲାଣି । ବେଳହୁଁ ସାବଧାନ କରି ଦେଇଗଲି ।

ମାଲପାଣି : ବେଶିଦିନ ଆଉ କୋଉଠି ହେଲା । ମୋଟେ ଦଶବର୍ଷ ତାଙ୍କର ହେଇଛି । ଲୋକେ ତ ପୁଣି ୧୫।୨୦ ବର୍ଷ ଲେଖାଏ ରହୁଛନ୍ତି ।

ସଲିମ : ହଁ, ଶୁଣ । ନେତାଙ୍କ ଅଡ଼ର । ଘଟଣାଟା ଯେମିତି କାନରୁ ଦି'କାନ ନ ହୁଏ ।

ମାଲପାଣି : ଇଏ କେମିତିକା କଥା । ଆମ ଦାନାପାଣି କ'ଣ ଗନ୍ଧେଇଲାଣି !

ସଲିମ : ରାତି ବାରଟା ପରେ ସିଧାସଳଖ ନେତା ଏଠିକି ଆସିବେ । ଏ କଥା କେହି ଯେମିତି ନ ଜାଣନ୍ତି । ଇନିସ୍‌ପେକ୍ଟରକୁ କହିଦବୁ ।

[ସଲିମ ଚାଲିଯାଉଛି ଦମ୍ ଦମ୍ ହେଇ ]

ମାଲପାଣି : କି ମାରଣା ଷଣ୍ଢରେ ବାବା । କଥା କଥାକେ ଛୁରୀ ଭୁଜାଲି । ବାବୁ ମାଲ୍‌ପାଣି, ତୋର ସେଥିରେ ମୁଣ୍ଡ ଖେଳେଇବା ଦରକାର ନାହିଁ । ତୁ ଯୋଉ କନେଷ୍ଟବଳକୁ ସେଇ କନେଷ୍ଟବଳ...

[ଟେବୁଲ ଉପରେ ଗୋଡ଼ରଖି ବିଶ୍ରାମ କରିଛି ]



# ଷଷ୍ଠ ଦୃଶ୍ୟ

ସ୍ଥାନ – ସହରର ସେହି ଗାନ୍ଧିଛକ

ସମୟ – ଦିବସ / ସକାଳ

ଚରିତ୍ର – ବଗୁଲିଦାସ, ଚରଣଦାସ

[ସହରର ସେହି ଛକ । ଗାନ୍ଧି ଛକ । ପ୍ରତିମୂର୍ତ୍ତି ପାଖକୁ ଆସିଛି ବଗୁଲି ଦାସ । ସାଥିରେ ଚରଣଦାସ । ହାତରେ ଫୁଲମାଳ ]

ଚରଣ : ଆଉ ତାହେଲେ ଡେରି କାହିଁକି ? ଫୁଲମାଳଟା ପିନ୍ଧେଇ ଦିଅନ୍ତୁ ।

[ବଗୁଲି ଦାସ ଫୁଲମାଳଟି ଚରଣଦାସର ହାତରୁ ନେଇଛି । ଗାନ୍ଧି ମୂର୍ତ୍ତିକୁ ଚାହିଁଛି । ହସିଛି । ପରେ ପରେ ଫୁଲମାଳଟି ପ୍ରତିମୂର୍ତ୍ତି ବେକରେ ଲମ୍ବାଇ ଦେଇଛି । ତାଳି ମାରିଛି ଚରଣ ଦାସ ଖୁସିରେ ]

ବଗୁଲି : ଆବେ, କିଏ ତାଳି ମାରିଲା ?

ଚରଣ : କିଏ ଆଉ ମାରି ପାରିବେ ! ଏ ଦେଶର ଜନସାଧାରଣ । ଗଣତନ୍ତ୍ରର ମେରୁଦଣ୍ଡ । ଜାଗ୍ରତ ପ୍ରହରୀ । ଯେଉଁମାନେ ଆପଣଙ୍କୁ ଏ ନିର୍ବାଚନ ବୈତରଣୀ ପାରି କରାଇଛନ୍ତି ।

ବଗୁଲି : ହଇହୋ ସେମାନେ କ'ଣ ପାରି କରେଇବେ ? ମୁଁ କ'ଣ ପହଁରା ଜାଣିନି ? ପୋଖରୀ, ଗଡ଼ିଆ, ନଇ ସବୁ ପହଁରି ଜାଣିଛି ।

ଚରଣ : ମୁଁ ସେକଥା କହୁନି ।

ବଗୁଲି : ଆଉ କୋଉ କଥା ?

ଚରଣ : ଆପଣ ପରା ପ୍ରତିନିଧି । ଲୋକପ୍ରତିନିଧି । ଜନତା ମୋହର ଦେଇ ଆପଣଙ୍କୁ ଜିତେଇଛନ୍ତି ।

ବଗୁଲି : ଭୁଲ୍ ! ସବୁ ଭୁଲ୍ ! ହଇହୋ, ସେମାନେ କ'ଣ ମତେ ଜିତେଇବେ ? ମୁଁ କ'ଣ ତାଙ୍କରି ପଇସାରେ ଜିତିଛି ? ମୋ ପକେଟ୍‌ରୁ ତାହେଲେ ବାର ଲକ୍ଷ ଟଙ୍କା ଖର୍ଚ୍ଚ ହେଲା କ'ଣ ପାଇଁ ? ସେଗୁଡ଼ାକ ସବୁ କ'ଣ ଦାନ ?

ଚରଣ : ଆମ ପାର୍ଟି ଆଉ ତିନିଟା କାଉନ୍‌ସିଲର ଆଣି ପାରିଥିଲେ ତ ଆମର ମେଜରିଟି ହୋଇଯାଇଥାନ୍ତା !

ବଗୁଲି : ମାରଗୁଲି ସେ ମେଜରିଟିକୁ । ହାଇକମାଣ୍ଡ ଦେଲେ ଦି'ଲକ୍ଷ । ନିଅ । ଖର୍ଚ୍ଚ କର । ମୁଁ ଯେମିତି ଭିକାରି ? ଯା'ଙ୍କୁ ଭିକ୍ଷା ମାଗୁଛି ? ଆଳୁ କିଲୋ ଆସି ଦଶବାର ହେଲାଣି, ଯା'ଙ୍କୁ କାଉନ୍‌ସିଲରଗୁଡ଼ାକ ଏତେ ସହଜରେ ମିଳିଯିବେ !

ଚରଣ : ସବୁଠି ତ ଆମ ପାର୍ଟିର ସେହି ପ୍ରକାର ଅବସ୍ଥା । ଟଙ୍କା ହାତରୁ ପଛେ ଗଲେ ଯାଉ, ହେଲେ ଜିତାପଟ ତ ଆମର ହେଲା ।

ବଗୁଲି : ପକେଟରୁ ମାଲ୍ ଗଲେ ଜାଣିବ ।

ଚରଣ : ଯାହା ପଛେ ହଉ, ଆମ ପାର୍ଟିଲୋକେ ଭାରି ଖୁସି । ଆଠଟା ସ୍ଥାନରେ ଆମ ପ୍ରାର୍ଥୀ ଜିତିଲେ । ହେଲା ପଛେ ସବୁ ଜାଗାରେ କିଛି କିଛି ଚାନ୍ଦା ଦବାକୁ ପଡ଼ିଛି । ଗଣତନ୍ତ୍ରରେ ତ ଏସବୁ ଚଳେ !

ବଗୁଲି : ଗାଲୁଆଟା ମୋ ସାଙ୍ଗ ହେଇ ଟଙ୍କା ପାଞ୍ଚଲକ୍ଷ ଦେଇ ପାରିଲାନି । ଏ ଦରିଦ୍ରା ରାଜନୀତି କରିବ କାହିଁକି ? ମୁଁ ସେମାନଙ୍କୁ ରାଜନୀତି କରି ଦେଖେଇଦେବି ।

ଚରଣ : କାଉନସିଲର ତ ସିଏ ଯୋଗାଡ଼ କରିଛନ୍ତି !

ବଗୁଲି : ହେଲେ ଟଙ୍କା ମୁଁ ଦେଇଛି । ଯିଏ ଯାହା କହୁ ପଛେ, ସଲିମ୍‌ଟା ଗୋଟାଏ ଖାସା ମଣିଷ । ତା' ପାବାରକୁ ମାନିବାକୁ ପଡ଼ିବ ।

ଚରଣ : ପୈତୃକ ପ୍ରାଣଟିକୁ କାହାର ଭୟ ନାହିଁ । ତା' ଭୁଜାଲିଟା ପ୍ରକୃତରେ ଭଲ କାମ ଦେଲା । ଦି'ଖଣ୍ଡ ଭୋଟ କମ୍ ହୋଇଥିଲେ, ଆପଣ ବୁଡ଼ି ଯାଇଥାନ୍ତେ । ଗୋଟାଏ ଧମକାରେ ଶିଳ ଶିଳୁପୁଆ ଏକାକାର । ପୁଅକୁ ମାନିବାକୁ ପଡ଼ିବ ।

ବଗୁଲି : ହଁ, ଦାସେ । ଗୋଟାଏ ତିଥି ବାହାର କର । ସେଦିନ ସଲିମ୍‌କୁ ଆମ ମୁନିସିପାଲିଟି ତରଫରୁ ସମ୍ମାନିତ କରାଯିବ । ନିଜେ ଚେୟାରମାନ ପୁରସ୍କାର ଦେବେ । ଖୋଦ୍ ବଗୁଲି ଦାସ । ଚେୟାରମାନ... ।

ଚରଣ : ପୁରସ୍କାରଟା କୌଣସି ଗୋଟାଏ କାର୍ଯ୍ୟରେ ସାଧାରଣତଃ ଦିଆଯାଏ । ତାଙ୍କର ତ ସେଭଳି—

ବଗୁଲି : ମୋ ପୁରସ୍କାର ପାଇଁ ନିୟମାବଳୀ ମୁଁ ତିଆରି କରିବି । ମୁଁ ଚେୟାରମ୍ୟାନ୍... । ମୋ ବିନାନୁମତିରେ ମୁନିସିପାଲିଟିର ପତ୍ରଟାଏ ବି ହଲିପାରିବ ନାହିଁ ।

ଚରଣ : ତାହା ତ ନିଶ୍ଚୟ ।

ବଗୁଲି : ହଁ, ଆଉ ଗୋଟାଏ କଥା । ବାର ଲକ୍ଷ ମୋ ହାତରୁ ଯାଇଛି । ସୁଧମୂଳ ସହିତ ବତିଶି ଲକ୍ଷ ମୁଁ ଉଠେଇବି । ସେ ଟଙ୍କା କେମିତି ଉଠିବ, ସେ ବିଷୟରେ ଚିନ୍ତାକର । ରାତାରାତି ପିଲାନ୍ ତିଆରି କର ।

ଚରଣ : ପ୍ରଥମ ଛ' ମାସ ଛାଡ଼ିଦବା । ସେବା କରିବା । ଜନତା ଜନାର୍ଦ୍ଦନଙ୍କ ସେବା । ତାପରେ—

ବଗୁଲି : ନା, ଛ' ମାସ ବହୁତ ହେଇଯିବ । ତିନିମାସ ଯଥେଷ୍ଟ । ଏତେଦିନ ମୁଁ ଅପେକ୍ଷା କରିପାରିବି ନାହିଁ । ମୋର ଟଙ୍କା ଦରକାର । ଯେତେ ଶୀଘ୍ର ସେଇଟା, ଆସିବା ଦରକାର ।

ଚରଣ : ଦେଖି ଚାହିଁ କାମ ନ କଲେ ପାର୍ଟି ବଦନାମ ହେଇଯିବ । ତାପରେ ନୂଆ ନୂଆ ଗାଦିଟା ମିଳିଛି...

ବଗୁଲି : ପୁଣି ସେଇ ପାର୍ଟି ନାଁ ଧରିଲ ! ମୁଁ କାହା ଦୟାରେ ଗାଦିକୁ ଆସିନି ।

ଚରଣ : ଆଚ୍ଛା, ମୁଁ ଦେଖୁଛି ଆପଣ ଅଳ୍ପରେ ସନ୍ତୁଷ୍ଟ ହେବା ଲୋକ । ଚେୟାରମାନ ପରେ M.L.A. ଆଉ ତାପରେ ମନ୍ତ୍ରୀ... ପାହାଚ ପରେ ପାହାଚ ।

ବଗୁଲି : ମୁଁ ମନ୍ତ୍ରୀ ହେଇପାରିବି ? ସତ କହୁଛ ?

ଚରଣ : ଖାଲି ମନ୍ତ୍ରୀ ନୁହେଁ, କିଛି M.L.A.ଙ୍କୁ ପଟେଇ ପାରିଲେ ମୁଖ୍ୟମନ୍ତ୍ରୀ ମଧ ହୋଇଯିବେ । ଇଏ ହେଲା ପଟାପଟି ଯୁଗ । ପଟାପଟି ନଇଲେ ଫଟାଫଟି ।

ବଗୁଲି : ବଗୁଲି ଦାସ ହବ ମୁଖ୍ୟମନ୍ତ୍ରୀ !

ଚରଣ : ଗାଲମାଧବ ଭଳି ଚୋର ଖଣ୍ଡ ତସ୍କର ଯଦି ଏତେ ଉପରକୁ ଉଠିପାରିଲା...

ବଗୁଲି : ହଁ, ଆଠ ଦଶଟା ମର୍ଡ଼ର କେଶ୍‌ର ଖୁନୀ ଆସାମୀ ଏଠି ସର୍ବେସର୍ବା... ନେତା... ମନ୍ତ୍ରୀ ତ ମନ୍ତ୍ରୀ, ପୁଣି ମୁଖ୍ୟମନ୍ତ୍ରୀ !

ଚରଣ : ଆଉ ଆପଣ ତ ଭାଟିବାଲା । ପାଣି ସହିତ ପାଣି ମିଶିଯିବ । କାହିଁକି ମୁଖ୍ୟମନ୍ତ୍ରୀ ହେଇପାରିବେନି ?

ବଗୁଲି : ବଗୁଲି ଦାସ ହବ ଏ ରାଜ୍ୟର ମୁଖ୍ୟମନ୍ତ୍ରୀ । ନାଁ, ଆଉ ହବନି । ପ୍ରେଷ୍ଟିଜ୍ ଇସୁ । ଇଏ ଦେଶୀ କାରବାର ଆଉ ଚଳିବନି । ଚିନ୍ତାକର । ଆହୁରି ଚିନ୍ତାକର ।

ଚରଣ : ଉଚିତ କଥା ଆଜ୍ଞା । ଆପଣ ଚେୟାରମାନ ହେଲେଣି । ଅତି କମ୍‌ରେ ଦୁଇ / ତିନୋଟି ଫରେନ ଲିକର ଦୋକାନ ଖୋଲନ୍ତୁ । ଭଲ ଆମଦାନୀ ହବ ।

ବଗୁଲି : ରୁହ, ମୁଁ ତାକୁ ଟିକିଏ ପଚାରେ । ସେଇ ଗାଲୁଆ ମତେ ଜିତେଇଛି । ସିଏ କହୁ, ମୋ ଲିକର ଦୋକାନ କୋଉଠି ହବ । ସିଏ ଯୋଉଠି କହିବ, ସେଇଠି ହବ ।

ଚରଣ : ତାଙ୍କୁ ପଚାରି ଲାଭ କ'ଣ ? ଆପଣଙ୍କୁ କ'ଣ ଭଲ ଜାଗା ଦେଖାଯାଉନି ? ଏଡ଼େବଡ଼ ମୁନିସିପାଲିଟିର ହର୍ତ୍ତାକର୍ତ୍ତା-ଭାଗ୍ୟବିଧାତା ଆପଣ—

ବଗୁଲି : ଏଇ ଜାଗାଟା ଉଚିତ ସ୍ଥାନ । ଛକ ଜାଗା । ସମସ୍ତଙ୍କ ଦୃଷ୍ଟି ବି ଦୋକାନ ଉପରେ ରହିବ । ନା' କ'ଣ କହୁଛ ?

ଚରଣ : ଏଠି ଦୋକାନଟା ହେଲେ ଭଲ ଯେ କିନ୍ତୁ ସରକାରଙ୍କ ଅନୁମତି ସହଜରେ ମିଳିବନି ।

ବଗୁଲି : ସରକାର ତ ମୁଁ ନିଜେ । ଗାଲୁଆ ଏତିକିଟା ମତେ ସାହାଯ୍ୟ କରିବନି ? ତାକୁ କହିବି ।

ଚରଣ : କଥାଟା ସେଠି ନାହିଁ । ବିଧବା ସ୍ତ୍ରୀ ଲୋକଟା କୁଆଡ଼େ ଯିବ ? ବିଚାରୀ ବରାପିଆଜି ଦୋକାନ କରି ବଞ୍ଚୁଛି । ସେଇ ଭାରତୀ ମ ।

ବଗୁଲି : ସରକାରୀ ଜାଗାରେ ଦୋକାନ କରିବ ? ମୁଁ କାଲି ଅର୍ଡ଼ର କରୁଛି । ମୁନିସିପାଲିଟି ଜାଗାରୁ ଜବରଦେଖଲକାରୀଙ୍କୁ ଉଠେଇ ଦିଆଯିବ । ଏଣିକି ନିଜ ରାସ୍ତା ସେମାନେ ନିଜେ ଦେଖନ୍ତୁ ।

ଚରଣ : ଏତେ ହଠାତ୍ ଏମିତି କରିବାଟା କ'ଣ ଠିକ୍ ହବ ? ଲୋକେ କ'ଣ କହିବେ !

ବଗୁଲି : ଇଲେକସନ ଜିତିବି ମୁଁ, ଆଉ ଠିକ୍ ଭୁଲ୍‌ର ବିଚାର କରିବେ ସେମାନେ ? ଅସମ୍ଭବ...

ଚରଣ : ପାର୍ଟି ଯଦି କିଛି ବାଧା ସୃଷ୍ଟି କରେ—?

ବଗୁଲି : ଗାଲମାଧବ ମୋଠୁଁ ବଳେଇ ଯିବନି । ସେ କଥା ମୁଁ ବୁଝିବି । ଚରଣ, ତେମେ ଖାଲି ଉପର ତଳ ଟିକେ ଅନଉଥାଅ । ଗୋଟିଏ ପରେ ଗୋଟିଏ ପାହାଚ ଚଢ଼ି ମୁଁ ଆଗେଇଯିବି । ଖୁବ୍ ଶୀଘ୍ର ମତେ ମୁଖ୍ୟମନ୍ତ୍ରୀଟା କରେଇଦିଅ ବାପୁ । ଯାହା ଚାହିଁବ ଦେବି... ।

[ବାପୁଙ୍କ ପାଖେ ନତମସ୍ତକ ହୋଇଛି ବଗୁଲି ]



# ସପ୍ତମ ଦୃଶ୍ୟ

ସ୍ଥାନ – ସହରର ସେହି ଥାନା

ସମୟ – ଗଭୀର ରାତି

ଚରିତ୍ର – ମାଳପାଣି, ପରମଗୁରୁ,
ଗାଲମାଧବ, ବୃଦ୍ଧ ନିତାଇରାମ୍

[ସହରତଳି ସେହି ପୁରୁଣା ଥାନା । ଥାନା ଭିତରେ ନିସ୍ତବ୍ଧ ନୀରବତା । କ'ଣ କରିବେ କିଛି ସ୍ଥିର କରିପାରୁନାହାନ୍ତି ପୁଲିସ୍ ଇନ୍‌ସପେକ୍ଟର ପରମଗୁରୁ । ରାତି ବଢୁଥାଏ । ପରମଗୁରୁ ଏବଂ ମାଳପାଣି ଭିତରେ ତାତି ବଢୁଥାଏ । ଉଭୟ ବିବ୍ରତ । କାହାରି ପ୍ରତୀକ୍ଷା ସେମାନଙ୍କୁ ମ୍ରିୟମାଣ କରି ପକାଉଥାଏ ]

ପରମଗୁରୁ : 'ସ୍କାଉଣ୍ଡ୍ରେଲ'... !

ମାଳପାଣି : ମୁଁ ଆପଣଙ୍କୁ ଆଗରୁ ମନା କରିଛି । କାହିଁକି ମହରଗରୁ ଆସି କାନ୍ତାରରେ ପଡ଼ିଲେ ?

ପରମଗୁରୁ : 'ବାଜେ ଲୋକଟା' !

ମାଳପାଣି : ଭଲଲୋକମାନେ କ'ଣ ରାଜନୀତି କରନ୍ତି ! ପାପର ଭାରା ବେଶି ହେଲେ ମଣିଷ ରାଜନୀତି କରେ । ଅବଶ୍ୟ ଅନ୍ୟ ବେପାରଠାରୁ ଏଥିରେ ଭଲ ଫାଇଦା ଅଛି । ନେଇ ଆଣି ଥୋଇ ପାରିଲେ ରାତାରାତି ହୁଲିଆ ବଦଳି ଯିବ ।

ପରମଗୁରୁ : ଯେତେ ସବୁ ରବିସ୍ ଚିନ୍ତାଧାରା... !

[ଟେଲିଫୋନ ରିଙ୍ଗ୍ ହୋଇଛି । ରିସିଭର ଉଠାଇଛି ମାଳପାଣି ]

ମାଳପାଣି : ହଁ... ଥାନା । x x କିଏ ଇନିସ୍‌ପେକ୍ଟରବାବୁ ! x x ହଁ... ହଁ... ଅଛନ୍ତି । ଦଉଛି । ଆଜ୍ଞା, ନିଅନ୍ତୁ ।

ପରମଗୁରୁ : ହଁ, ମୁଁ ଇନ୍‌ସପେକ୍ଟର ପରମଗୁରୁ କହୁଛି । × × ନମସ୍କାର ସାର୍ । × × ମୁଁ ତ କେବଳ ତାଙ୍କୁ ହିଁ ଅପେକ୍ଷା କରି ବସିଛି । × × ନା' ଏତେ ରାତିରେ କିଏ କାହିଁକି ଆସିବ ! × × ହଁ, ସାର୍... । ରହୁଛି... ।

[ରିସିଭର ରଖୁଛନ୍ତି ପୁ ଇ. ପରମଗୁରୁ ]

ମାଲପାଣି : ସାର୍, କିଏ ଫୋନ୍ କରିଥେଲେ ?

ପରମଗୁରୁ : ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟାରୀ ।

ମାଲପାଣି : ସାର୍, କିଛି ଗୋଟାଏ ଫଇସଲା କରିଦିଅନ୍ତୁ । ନଇଲେ କେତେଦିନ ଯାଏ ଏମିତି ରାତିଅଧିଆ ପଗଁତରା ମାରୁଥିବା ? ଆମର ତ ପୁଣି ସଂସାର ପିଲାକବିଲା ଅଛନ୍ତି ।

ପରମଗୁରୁ : ସବୁ କର୍ମଦୋଷ । ଗାଲମାଧବ ସାଙ୍ଗକୁ ବଗୁଲି ଦାସ । ଦେଶଟାକୁ ଭଡ଼ା ଲଗେଇ ଦବାକୁ ପଛେଇବେନି ।

ମାଲପାଣି : ଆମ ଲୋକେ ତ ଭକୁଆ । ତାକୁଇ ତ ନେତା ନିର୍ବାଚିତ କରିଛନ୍ତି ।

ପରମଗୁରୁ : ଟେକା ଫିଙ୍ଗିଥିବା ଲୋକଟା ଏଯାଏ ଚିହ୍ନଟ ହୋଇପାରିଲାନି, ତା' ସାଙ୍ଗକୁ ଏଇଟା ପୁଣି ଗୋଟାଏ ହେଡ଼ଏକ୍ ।

ମାଲପାଣି : ରାତି ଅଧରେ ଅନ୍ଧାରିବିଙ୍କେ । ଏଇଟା କୋଉଠିକା ନୀତି ?

ପରମଗୁରୁ : ଗାଲମାଧବ ଗୋଟାଏ ରାତ୍ରିଚର । ସମସ୍ତେ ଶୋଇ ପଡ଼ିଲା ପରେ ତା'ର ଅଫିସ୍ ଖୋଲେ ।

ମାଲପାଣି : ଯେତିକି ଦୋ'ନମ୍ବରୀ ଧନ୍ଦା ଆରମ୍ଭ ହବ ।

[କାର ହର୍ଣ୍ଣ ଶୁଭିଛି । ସଜାଗ ହୋଇ ଉଠିଛନ୍ତି ପୁ. ଇ. ଏବଂ ମାଲପାଣି ]

[ଗାଲମାଧବକୁ ସାଲ୍ୟୁଟ କରିଛନ୍ତି ଉଭୟ ପୁ. ଇ. ଏବଂ କନେଷ୍ଟବଳ ମାଲପାଣି ]

ପରମଗୁରୁ : ବସନ୍ତୁ ସାର୍ ।

ମାଲପାଣି : ସାର୍, ଥଣ୍ଡା ନା' ଗରମ, ଆଣିବି ?

ଗାଲମାଧବ : ଥାଉ, କିଛି ଦରକାର ନାହିଁ । Spot ଏନକ୍ୱାରୀ ପାଇଁ ସେଦିନ କିଏ ଯାଇଥିଲା ?

ପରମଗୁରୁ : ମୁଁ ନିଜେ ଯାଇଥିଲି, ସାର୍ । ମାଲ୍‌ପାଣି ବି ସାଙ୍ଗରେ ଥିଲା । ଆମେ ଟିକିନିଖି ସବୁ ଜିନିଷ ଦେଖିଥିଲୁ ।

ଗାଲମାଧବ : ଏତେ ବଡ଼ ଭୁଲ୍‌ଟା ହେଲା କେମିତି ?

ମାଲପାଣି : ମୁହଁଟା ପୂରାପୂରି ଛେଚି ହୋଇଯାଇଥିଲା । ଦେହରେ ଖଦଡ଼ ଲୁଗା । ଗାନ୍ଧି ରଚନାବଳୀରୁ ଖଣ୍ଡେ ବି ଥିଲା । ତାଙ୍କ ବ୍ୟାଗ୍, ଗଣ୍ଠିଲି ସବୁ ମିଳିଥିଲା ।

ପରମଗୁରୁ : ସେ ଯେଉଁ ଆକ୍ସିଡେ଼ଣ୍ଟ... ସେଥିରେ ଜଣକୁ ଚିହ୍ନଟ କରିବା ଭାରି କଷ୍ଟ । ଯେତିକି ପ୍ରମାଣ ମିଳିଥିଲା, ତାକୁ ଆଧାର କରି ଆମେ ଶେଷ ନିଷ୍ପତ୍ତିରେ ପହଞ୍ଚିଥିଲୁ । ତା'ଛଡ଼ା ଆମ ପାଖେ ଅନ୍ୟ ଚାରା ନଥିଲା ।

ମାଲପାଣି : ତାପରେ ଗାନ୍ଧି ଆଶ୍ରମବାଲାଏ ଶବ ଚିହ୍ନଟ କରିଥିଲେ । କଂଠଉ ବି ମିଳିଥିଲା । ଡାହାଣ ଆଙ୍ଗୁଳିର କ୍ଷତ, ପିଠିର କଳାଜାଇ ଚିହ୍ନକୁ ସେମାନେ ଚିହ୍ନିଥିଲେ ।

ପରମଗୁରୁ : ଏତେସବୁ ପ୍ରମାଣ ମିଳିସାରିଲା ପରେ—

ଗାଲମାଧବ : ସବୁ ଗଣ୍ଡଗୋଳ ହୋଇଗଲା । ତା' ନାଁରେ ପାର୍କ, ସ୍କୁଲ, ଲାଇବ୍ରେରି, ରୋଡ୍, ଷ୍ଟାଚ୍ୟୁ— ଏତେ ସବୁ...

ମାଲପାଣି : ସାର୍, କଥାଟା ଜଣା ପଡ଼ିଲେ, ଲୋକେ କ'ଣ କହିବେ ! ଆପଣଙ୍କ ମାନସମ୍ମାନ ଆଉ ରହିବ ?

ଗାଲମାଧବ : ଲୋକଟାର ବଞ୍ଚିରହିବା ହିଁ ଆମ ପାଇଁ କାଳହେବ ।

ମାଲପାଣି : ସାର୍, ଜେଲ୍‌କୁ ପଠାଇଦେଲେ—

ଗାଲମାଧବ : ହଁ, ସେଇଟା ବି ମନ୍ଦ ନୁହଁ ।

ପରମଗୁରୁ : ବିନା ଦୋଷରେ ଜଣକୁ ଜେଲ ପଠାଇବାଟା—

ଗାଲମାଧବ : ଘଟଣାଟା ପ୍ରଘଟ ହେଲେ ସମସ୍ତେ ବୁଡ଼ିବା । ପ୍ରଥମ ଭୁଲ୍ ତମର । ତମ ବିରୁଦ୍ଧରେ ଆକ୍ସନ ନିଆଯିବ । ଜୀବିତ ଲୋକଟାକୁ ମାରିଦବାଟା କି ପ୍ରକାର ଅପରାଧ, ସେ କଥା ତମେ ଭଲଭାବେ ଜାଣ, ଇନ୍‌ସପେକ୍ଟର ।

ପରମଗୁରୁ : ସାର୍, ମୁଁ ଆଉ କ'ଣ କରିପାରିଥାନ୍ତି ?

ଗାଲମାଧବ : ସେ ବାହାରକୁ ବାହାରିବାଟା ଆମପ୍ରତି ବିପଦ । ତେଣୁ କିଛିଦିନ ତାଙ୍କୁ undergroundରେ ରହିବାକୁ ପଡ଼ିବ । ହଁ, ସେ ଆଉ ନିଜ ନାଁରେ ଚଳପ୍ରଚଳ ହୋଇପାରିବେ ନାହିଁ । ତାଙ୍କୁ ସତର୍କ ଦୃଷ୍ଟି ରଖିଥିବ ।

ପରମଗୁରୁ : ସେ ସଚ୍ଚା ଗାନ୍ଧିବାଦୀ । ଏସବୁକୁ ମାନିବେ ତ ?

ଗାଲମାଧବ : ମନେଇବା ଦାୟିତ୍ୱ ତମର । ତା' ନହେଲେ ମହା ବିଭ୍ରାଟ ସୃଷ୍ଟିହେବ । ଆଉ ସେ ବିଭ୍ରାଟର ପ୍ରଥମ ଶିକାର ହବ ତମେ ଇନ୍‌ସପେକ୍ଟର । ତମେ । ହଁ, ସେ ତାହେଲେ– ?

ପରମଗୁରୁ : ସାର୍, ସେ ମୋ କ୍ୱାଟରରେ ରହୁଛନ୍ତି । ଏଯାଏ ବାହାରକୁ ବାହାରି ନାହାନ୍ତି । ଅବଶ୍ୟ ପ୍ରଥମେ ଯେଉଁ କେତେଜଣ ତାଙ୍କୁ ଦେଖିଥିଲେ, ଭୂତ ବୋଲି ଦଉଡ଼ି ପଳାଇଥିଲେ ।

ଗାଲମାଧବ : କେହି ଯେମିତି ଏ ଘଟଣାର ସୁରାକ୍ ନ ପାଆନ୍ତି । ସତର୍କ ହୋଇ ଚଳିବାକୁ ହବ । ଧୀରେ ଧୀରେ ତାଙ୍କ ବ୍ରେନ୍ ୱାସ୍ କରିବାକୁ ପଡ଼ିବ ।

ମାଇପାଣି : ସାର୍, ଡାକି ଆଣିବି ?

ଗାଲମାଧବ : ହଁ, ଯାଅ । ଚାରିଆଡ଼କୁ ଦୃଷ୍ଟି ରଖି ଯିବ । ଏପରିକି ଆମ ଡ୍ରାଇଭର ବି ଯେମିତି ଜାଣି ନ ପାରେ ।

ମାଲପାଣି : ସାର୍, ଆପଣ ନିଶ୍ଚିତ ରୁହନ୍ତୁ । ଏ ମାଲପାଣି ହେଉଛି ପୁରୁଣା ମୂଷା... ।

[ବାହାରକୁ ଯାଇଛି ମାଲପାଣି ]

ଗାଲମାଧବ : ନିତାଇରାମ ସହଜ ଲୋକ ନୁହଁ । ଭାଙ୍ଗିପଡ଼ିବ ପଛେ ନଇଁବ ନାହିଁ । ପକ୍କା ଗାନ୍ଧିବାଦୀ ।

ପରମଗୁରୁ : ସାର୍, ୟାର ପରିଣତି କ'ଣ ହବ, ଭାବି ପାରୁଛନ୍ତି ?

ଗାଲମାଧବ : ପରିଣତିକୁ ଗୁଳିମାର । ପ୍ରଥମେ ନିଜେ ବଞ୍ଚିଶିଖ । ତାପରେ ଦେଶକୁ ବଞ୍ଚେଇବ ।

ପରମଗୁରୁ : ବଡ଼ ଏକଜିଦିଆ ଲୋକ ।

ଗାଲମାଧବ : ସିଧା ରାସ୍ତାରେ ଯଦି ସିଏ ରାଜି ନ ହୁଅନ୍ତି, ତେବେ ବାଧ ହୋଇ ତାଙ୍କୁ ବଙ୍କା ରାସ୍ତା ଧରିବାକୁ ପଡ଼ିବ । ମରିଯାଇଥିବା ମଣିଷଟାକୁ ମାରିବାକୁ ବେଶି ସମୟ ଲାଗିବ ନାହିଁ ।

[ନିତାଇରାମ, ମାଳପାଣି ପ୍ରବେଶ କରିଛନ୍ତି । ସାଷ୍ଟାଙ୍ଗ ପ୍ରଣିପାତ କରିଛି ଗାଲମାଧବ ]

ନିତାଇରାମ : ଉଠ, ବାପା । ଉଠ ।

ଗାଲମାଧବ : ଭାଗ୍ୟରେ ଥିଲେ ଆପଣଙ୍କ ଦର୍ଶନ ମିଳେ ।

ନିତାଇରାମ : ସେମିତି କାହିଁକି କହୁଛ ? ଆଉ, ଶାସନ କେମିତି ଚାଲିଛି ? ଦେଶ ଠିକ୍ ଚାଲିଛି ତ ?

ଗାଲମାଧବ : ସବୁ ତ, ଆପଣମାନଙ୍କ ଆଶୀର୍ବାଦରୁ ।

ନିତାଇରାମ : ତମ ବାପାଙ୍କୁ ଜୋର୍ କରି ମୁଁ ଶାସନଗାଦିକୁ ପଠେଇଥିଲି । ଯୋଉଠି ରହିଲେ ବି ଗାନ୍ଧିକାମ କରିହେବ । କମ୍ ବୁଝେଇଛି ସେତେବେଳେ ।

ଗାଲମାଧବ : ସେ ତ ସବୁବେଳେ ଆପଣଙ୍କ କଥା ପକାନ୍ତି । ଏମିତିକି ମଲାବେଳେ ମଧ୍ୟ...

ନିତାଇରାମ : ହଁ, ଶେଷ ସମୟରେ ତା' ସହିତ ଭେଟ ହେଇ ପାରିଲା ନାହିଁ । ମୁଁ ରହିଗଲି ଓ୍ୱାର୍ଦ୍ଧା ଗାନ୍ଧି ଆଶ୍ରମରେ । ସେଇଠୁ ତାଙ୍କ ଦେହାନ୍ତ ଖବର ପାଇଥିଲି ।

ଗାଲମାଧବ : ସେଦିନ ଟ୍ରେନରେ ତ ଆପଣଙ୍କର ଆସିବାର ଥିଲା ?

ନିତାଇରାମ : ଶେଷ ମୁହୂର୍ତ୍ତରେ ପ୍ରୋଗ୍ରାମ୍ କ୍ୟାନସଲ୍ ହେଲା । ମୋ ଜିନିଷପତ୍ର ବିଧୁ ହାତରେ ପଠାଇ ଦେଇଥିଲି । ବେଡ଼ିଙ୍ଗ୍, ବ୍ୟାଗ ଆଦି ସବୁ ଜିନିଷ ଲଦା ହେଇସାରିଥିଲା । ଟ୍ରେନ ଛାଡ଼ିବାକୁ ୫ ମିନିଟ୍ ଅଛି, ଖବର ପାଇଲି

ଆଶ୍ରମର ସାଧୁବାବୁ ଚାଲିଗଲେ । କେମିତି ଆଉ ଯାଇଥାନ୍ତି ? ଦୀର୍ଘଦିନର ସମ୍ପର୍କ । ବାଧ ହେଇ ଫେରିଲି ।

ପରମଗୁରୁ : ହେଲେ ଜିନିଷପତ୍ର ?

ନିତାଇରାମ : ବିଧୁ, ପାଖରେ ବସିଥିଲା । ତାର ତ ଆସିବା ଜରୁରୀ ଥିଲା । ସେ ନେଇ ଆସିଲା ମୋ ଜିନିଷପତ୍ର ।

ମାଲପାଣି : ତାହେଲେ ସେ ଲାସ୍‌ଟା– ?

ପରମଗୁରୁ : ନିଶ୍ଚୟ ବିଧୁବାବୁଙ୍କର ।

ଗାଲମାଧବ : ଆମେ ଏଇନେ ମହା ଅସୁବିଧାରେ ପଡ଼ିଛୁ । ଦୀର୍ଘଦିନ ଧରି ଆପଣଙ୍କ ଅନୁପସ୍ଥିତି... । ତାପରେ ଆପଣଙ୍କ ଆଶ୍ରମବାଲାଏ କେମିତି କହିଲେ ଯେ ସେ ଲାସ୍‌ଟା ଆପଣଙ୍କର ବୋଲି !

ନିତାଇରାମ : ଏମିତି ଭୁଲ୍ ସେମାନେ କରିବା କଥା ନୁହଁ । ସେମାନେ ଜାଣିଥିଲେ, ମୁଁ ଆସୁଛି ବୋଲି । ଆଗରୁ ମୁଁ ଆଶ୍ରମକୁ ଚିଠି ଦେଇଥିଲି । ହଁ, ବିଧୁର ଆସିବାର ନଥିଲା । ହଠାତ୍ ସେ ଆସିଲା ।

ପରମଗୁରୁ : ଆଙ୍ଗୁଳିର କ୍ଷତ, ପିଠିପାଖ ଚିହ୍ନ, ଆପଣଙ୍କ ବ୍ୟାଗ୍, କଠଉ– ଏ ସବୁ ଜିନିଷ ଦେଖିଲା ପରେ ସେମାନେ ବା କାହିଁକି ସନ୍ଦେହ କରିବେ ?

ନିତାଇରାମ : ଏକା ସାଙ୍ଗରେ ଆମେ ଦିହେଁ ଗୋରା ପୁଲିସ୍‌ର ଲାଠି ମାଡ଼ ଖାଇଥିଲୁ । ଆମ ଦି'ଜଣଙ୍କର ଆଙ୍ଗୁଳି, ଅଣ୍ଟା, ପିଠିରେ ସେ ଦାଗ ଥିଲା ।

ଗାଲମାଧବ : ସମସ୍ତେ ଯେତେବେଳେ କହିଲେ, ଶବଟା ଆପଣଙ୍କର ବୋଲି, ଆମେ ଆଉ କେମିତି ଚୁପ୍‌ଚାପ୍ ବସି ରହିଥାନ୍ତୁ ? ଆପଣଙ୍କ ଭଳି ସ୍ୱାଧୀନତା ସଂଗ୍ରାମୀଙ୍କର ମୃତ୍ୟୁହେବ, ଦେଶବାସୀ ନିରବରେ ବସି ରହିବେ ?

ପରମଗୁରୁ : ହଁ, ତିନଦିନ ରାଷ୍ଟ୍ରୀୟ ଶୋକ ପାଳିତ ହୋଇଛି । ଜାତୀୟପତାକା ଅର୍ଦ୍ଧନମିତ ହୋଇଛି । ପୂରାଦମ୍‌ରେ ଆମେ ଶୋକଦିବସ ପାଳନ କରିଛୁ ।

ମାଲପାଣି : ଶେଷକୁ ଠିକ୍ ହେଲା, ଆପଣଙ୍କ ବାସଭବନ, ବଗିଚା ଆଦିକୁ ସର୍ବସାଧାରଣଙ୍କ ସେବାରେ ଲଗାଯିବ ।

ଗାଲମାଧବ : ଆପଣଙ୍କ ଷ୍ଟାଚ୍ୟୁ, ଲାଇବ୍ରେରି, ରୋଡ୍, ମିଉଜିୟମ୍– ଏସବୁକୁ ମୁଁ ନିଜେ ଉଦ୍‌ଘାଟନ କରିଛି ।

ମାଲପାଣି : ଏତେ ସବୁ ଘଟଣା ପରେ–

ନିତାଇରାମ : ମୁଁ ବୁଝିପାରୁଛି ତମର ପରିସ୍ଥିତି କଥା । ହେଲେ ମୁଁ ଆଉ କ'ଣ କରିପାରିବି, କୁହ ।

ଗାଲମାଧବ : ମତେ କିଛିଦିନ ସମୟ ଦିଅନ୍ତୁ । ମୁଁ କିଛି ଗୋଟାଏ ବନ୍ଦୋବସ୍ତ କରିବି । ହେଲେ ସେତେଦିନଯାଏ ଆପଣ–

ନିତାଇରାମ : ତା'ମାନେ ପୁଣି ଥରେ ମତେ undergroundରେ ରହିବାକୁ ପଡ଼ିବ ?

ଗାଲମାଧବ : ମୋର ଏକାନ୍ତ ଅନୁରୋଧ, ମୋ ବାପାଙ୍କର ସାଥୀ ଆପଣ । ମୁଁ କେବେ ଆପଣଙ୍କର ଅସମ୍ମାନ କରିବି ନାହିଁ । ଆମକୁ ଏତିକି ସାହାଯ୍ୟ କରନ୍ତୁ ।

ପରମଗୁରୁ : ତା' ନହେଲେ ସରକାରର ଭାବମୂର୍ତ୍ତି ନଷ୍ଟ ହୋଇଯିବ ।

ଗାଲମାଧବ : ଆପଣଙ୍କର ଯାହା ଯେତେବେଳେ ଦରକାର ହେବ, ମୁଁ ଯୋଗାଇ ଦେବି ।

ମାଲପାଣି : ଆଜ୍ଞା, ଆହୁରି ଭଲହୁଅନ୍ତା, ଆପଣ ଯଦି ନୂଆ ନାଁରେ ପରିଚିତ ହୁଅନ୍ତେ !

ନିତାଇରାମ : କ'ଣ କହିଲ ? ବଞ୍ଚି ଥାଉଁ ଥାଉଁ ମୁଁ ମରିବି ? ଭୁଲ୍ କରିବ ତମେ, ଦଣ୍ଡ ଭୋଗିବି ମୁଁ ?

ଗାଲମାଧବ : କିଛିଦିନ ଆମକୁ ସାହାଯ୍ୟ କରନ୍ତୁ । ସବୁ ଠିକ୍ ହେଇଯିବ । ହଁ, ଆପଣ ଯେତେବେଳେ ମତେ ଡାକିବେ, ମୁଁ ହାଜର ହେବି । ଏଇଠି । ତେବେ ରାତି ବାରଟା ପରେ ।

ପରମଗୁରୁ : ସର୍ବସାଧାରଣରେ ଆପଣଙ୍କର ଆବିର୍ଭାବ ଆମକୁ ନିଶ୍ଚିତ ଭାବେ ଅପଦସ୍ଥ କରାଇବ ।

ଗାଲମାଧବ : ମତେ ତାହେଲେ ଯିବାପାଇଁ ଅନୁମତି ଦିଅନ୍ତୁ ।

ନିତାଇରାମ : ମୋର ଗୋଟାଏ କଥା ମନେ ରଖିଥିବ । ସାଧାରଣ ଗରିବ ମଣିଷଟିଏ ଯେମିତି ତମ ଶାସନରେ ହଇରାଣ ହରକତ ନହୁଏ ! ସେଇ ମଣିଷଟି ବାପୁର ପ୍ରିୟ ମଣିଷ ।

ଗାଲମାଧବ : ଆପଣଙ୍କ ପରାମର୍ଶ ନିଶ୍ଚୟ ପାଳିତ ହେବ । ଏଥର ମୁଁ–

[ଚାଲିଯାଉଛନ୍ତି ଗାଲମାଧବ ]

ନିତାଇରାମ : ମୁଁ ଜାଣିଥିଲି, ତା' ପୁଅ ନିଶ୍ଚୟ ଭଲ ଶାସନ କରିବ । ନାଁଟା ସିନା ଗାଇମାଧବ, ହେଲେ ପିଲାଟି ଭାରି ଭଲ ।... ସମୟ କେତେ ହେଲା ?

ପରମଗୁରୁ : ଗୋଟାଏ ବାଜିବ ।

ନିତାଇରାମ : ଯାଅ ବିଶ୍ରାମ କର । ରାତି ବହୁତ ହେଲାଣି ।

[ଚାଲିଯାଉଛନ୍ତି ନିତାଇରାମ । ପଛେ ପଛେ ମାଲପାଣି ]

ପରମଗୁରୁ : ସମୟ ହିଁ କହିବ, ଯାର ଶେଷ କେଉଁଠି ।

(ମଞ୍ଚ ଅନ୍ଧକାର ହୋଇଛି)



# ଅଷ୍ଟମ ଦୃଶ୍ୟ

ସ୍ଥାନ — ସହରର ସେହି ଛକ
ସମୟ — ଆନତ ସନ୍ଧ୍ୟା
ଚରିତ୍ର — ସଲିମ୍, ଭାରତୀ, ବଗୁଲି, ଚରଣଦାସ

[ସହରତଳି ଅଞ୍ଚଳର ସେହି ଛକ । ସହରର ନିତ୍ୟନୈମିତ୍ତିକ ଜୀବନଧାରା ଆଡ଼େ ଚାହିଁ ରହିଛି ପ୍ରତିମୂର୍ତ୍ତି । ସବୁ ଯେମିତି ଠିକ୍ ଅପରିବର୍ତ୍ତିତ ରହିଛି । ପ୍ରତିମୂର୍ତ୍ତିର ଫାଉଣ୍ଡେସନ ବେସ୍‌କୁ ଭରା ଦେଇ ବସିଛି ବଗୁଲି ଦାସ । ହାତରେ ଦାମୀ ସିଗାରେଟ୍ । ଚେହେରାରେ କିଛିଟା ପରିବର୍ତ୍ତନର ସଙ୍କେତ । ମନେ ମନେ ହସିଛି ବଗୁଲି ଦାସ । ସହରର ପଥର କାନ୍ଥରେ ସେ ହସର ଢେଉ ଯେମିତି ବାଧା ପାଇ ପୁଣି ଫେରି ଆସୁଛି ତାରି ପାଖକୁ । ମୁଖମଣ୍ଡଳରେ କୁଟିଳ ହସର ରେଖା... ଆଉ ଆଖିରେ ସର୍ବଗ୍ରାସୀ ନିଆଁର ଝୁଲ...]

ବଗୁଲି : କାଲିର ବଗୁଲି ଦାସ, ଆଜି ନେତା । ହେଲେ ଜନତା, ତମେ ଯୋଉ ଫମ୍ପା ଢୋଲକୁ ସେହି ଫମ୍ପା ଢୋଲ । ତମରିମାନଙ୍କ ଆଖି ସାମନାରେ ମୁଁ ଉଠିବି । ଉପରକୁ... ଆହୁରି ଉପରକୁ... ଅନେକ ଉପରକୁ । ହେଲେ ବିଚରା ଜନତା, ତମେ ଯୋଉଠି ଥିଲ ସେଇଠି ପଡ଼ିଥିବ... ସେମିତି... ।

[ନେପଥ୍ୟରୁ କିଛି ଗୋଟାଏ କୋଳାହଳ ଶୁଭିଲା । ସଲିମ୍ ଟାଣି ଟାଣି ଆଣିଛି ବିଧବା ନାରୀ ଭାରତୀକୁ ତାର ଅନିଚ୍ଛା ସତ୍ତ୍ୱେ ]

ସଲିମ : ଚାଲ୍... ଚାଲ୍... । ପେଖନା କାଢ଼ିବୁ ପଛେ ।

ବଗୁଲି : ଆସୁନ୍ତୁ, ଆ... । ଇଲୋ ଡରୁଛୁ କାହିଁକି ? ମୁଁ କ'ଣ ବାଘ ନା' ଭାଲୁ ? ତତେ ଖାଇଯିବି ?

ଭାରତୀ : ଚେୟାରମ୍ୟାନ ବାବୁ ! ଇଏ ସବୁ କ'ଣ ହଉଛି ?

ବଗୁଲି : କୋଉଠି ଆଉ ହେଲାଣି । ଯାତରା ତ ଜମା ଆରମ୍ଭ ହେଇନି । ହଉ । ଦେଖିବୁ ।

ଭାରତୀ : ମୁଁ ଆପଣଙ୍କର କି କ୍ଷତି କରିଥିଲି ? କାହିଁକି ମୋ ଦୋକାନ ଉଠଉଛନ୍ତି ? ଇଲେକସନ ବେଳେ ବଡ଼ ବଡ଼ କଥା ଶୁଣଉଥିଲ । ସମସ୍ତଙ୍କୁ ନ୍ୟାୟ ମିଳିବ । କାହାରି ଅସୁବିଧା ହବନି । ତା'ହେଲେ ଏ ସବୁ କ'ଣ ପାଇଁ ?

ବଗୁଲି : ସଲିମ୍, ଆରେ ଏ ସବୁ ମୁଁ କହିଥିଲି ? କାହିଁ, ମୋର ତ କିଛି ମନେପଡୁନି ।

ସଲିମ : ନେତାମାନେ ବହୁତ କଥା କହିଥାନ୍ତି । ସେଇଟା ତ ଏ ଦେଶର ପବିତ୍ର ପରମ୍ପରା ।

ଭାରତୀ : ଚେୟାରମ୍ୟାନବାବୁ, ମୁଁ ନ୍ୟାୟ ମାଗୁଛି । 'ନ୍ୟାୟ'...

ସଲିମ : ଏଇ ନାରୀ, ଭଲ୍ୟୁମ୍‌ଟା ଟିକିଏ କମେଇ ଦେ' । ଏ ସଲିମ୍ କାହାରି ଟେଢ଼ା କଥାବାର୍ତ୍ତା ଭଲପାଏନା ।

ଭାରତୀ : ଗଣତନ୍ତ୍ରରେ ଜନସାଧାରଣଙ୍କ କଣ୍ଠରୋଧ କରିବାକୁ ତମେମାନେ କିଏ ? ଭାରତ ଆଜି ସ୍ୱାଧୀନ । ଆଉ ସ୍ୱାଧୀନ ଭାରତର ମୁଁ ଜଣେ ନାଗରିକ । ମୋର କିଛି ଅଧିକାର ଅଛି ।

ସଲିମ : ଏ ନାଗରିକ ! ସେ ଅଧିକାରଟା ତୋ ଘର ଭିତରେ । ଏ ସଲିମ୍ ତୋତେ ଏଯାଏ ସେ ଅଧିକାର ଦେଇନି ।

ଭାରତୀ : ସ୍ୱାଧୀନ ଭାରତରେ ଏ ଗୁଣ୍ଡାଗର୍ଦ୍ଦି କେତେଦିନ ଚାଲିବ, ଚେୟାରମ୍ୟାନ ବାବୁ ? ସ୍ୱାଧୀନତାକୁ କିଛିଟା ସମ୍ମାନ ଦେଇ ଶିଖନ୍ତୁ । ଏଇଥିପାଇଁ ଆପଣ ଚେୟାରମ୍ୟାନ ହେଇଛନ୍ତି ?

ସଲିମ : ବହୁତ ବଢ଼ି ବଢ଼ି କହୁଛୁ । ଜିଭ ଓପାଡ଼ି ଦେବି ।

ବଗୁଲି : ମୋ ପଇସା ହିଁ ମତେ ଚେୟାରମ୍ୟାନ କରେଇଛି । କାହାରି ହାତଟେକା ଆଶୀର୍ବାଦରେ ମୁଁ ହେଇନି ।

ସଲିମ : ଆଉ ଏଇ ଭୁଜାଲି ତମମାନଙ୍କଠୁଁ ଭୋଟ୍ ଆଦାୟ କରିଛି । ଜନତା... ! ଏ ଦେଶର ଜନତା ! କ'ଣ କହିଲ, ସ୍ୱାଧୀନ ଦେଶର ନାଗରିକ !

ଭାରତୀ : ଗୁଣ୍ଡାମାନଙ୍କୁ ହାତକରି ଦିନେ ଦୁଇଦିନ ତମେ ହୁଏତ ଜିତିଯାଇପାର ! ହେଲେ ସବୁଦିନ ନୁହେଁ !

ସଲିମ : ଏ ନାଗରିକ, ବେଶି ଭଲ୍ୟୁମ୍ ବଢ଼େଇଲେ ମୁଣ୍ଡରୁ ଗଣ୍ଡିଟା ଅଲଗା କରିଦେବି ।

ଭାରତୀ : ସେତିକି ଛଡ଼ା କ'ଣଟା ଆଉ ଜାଣିଛ ? ବାପଠାରୁ ପୁଅକୁ ଛଡ଼େଇନେଇଛ... ସ୍ତ୍ରୀଠାରୁ ସ୍ୱାମୀକୁ ଛଡ଼ାଇ ନେଇଛ... କେତେ ନିଆଶ୍ରୀଙ୍କ ଘର ଉଜାଡ଼ିଚ... ଏସବୁ ଛଡ଼ା ଆଉ କ'ଣଟା ଶିଖିଛ ?

ବଗୁଲି : ଆଲୋ ଭାରତୀ, ତୋ ସ୍ୱାମୀଟା ଗଲାଦିନଠାରୁ ତୁ ବହୁତ ବକ୍‌ବକ୍ କଲୁଣି ।

ସଲିମ : କହିବେ ଯଦି, ତା' ପାଟିଟା ବନ୍ଦ କରିଦେବି !

ବଗୁଲି : ନାଇଁ, ସଲିମ୍ ନାଇଁ... ! ଖିରିଟା କଡ଼ରୁ ଖିଆଯାଏ, ମଝିରୁ ନୁହେଁ । ତା' ସ୍ୱାମୀଟା ବି ବେଶ୍ ବଡ଼ ବଡ଼ ଭାଷଣ ଶୁଣଉଥିଲା । ଶେଷକୁ ଗୋଟାଏ ପାଇଖାନା ପିଟ୍ ଭିତରେ ପଡ଼ି ମଲା । କେହି ଉଦ୍ଧାର କରିପାରିଲେ ନାହିଁ ।

ଭାରତୀ : ତମେମାନେ ତାକୁ ଚକ୍ରାନ୍ତ କରି ମାରିଦେଇଥିଲ !

ବଗୁଲି : ଏ ବଗୁଲି ଦାସ ଛୁଆଁଛୁଇଁରେ ବିଶ୍ୱାସ କରେନା । ଛୁଞ୍ଚିରେ ଫୋଡ଼ି ଜେଲ୍ ଯାଅନା । ଫାର୍ଶାରେ ହାଣି ଜେଲ୍‌ଯାଅ । ଆରେ ଦଣ୍ଡ ଭୋଗିବ ତ, ରାଜା ଭଳି ଦଣ୍ଡ ଭୋଗ । ଏମିତି ଲାଙ୍ଗୁଡ଼ ଜାକି ନୁହେଁ ।

ଚରଣଦାସ : ଆଲୋ ଆଲୋ (ପ୍ରବେଶକରି) ଇଏ ହଜିଲା ବଳଦ ଖୋଜିଲାଠେଇଁ । ମୁଁ ଉଣ୍ଡାଳୁଛି ସିଆଡ଼େ ଯାଇଁ ।

ବଗୁଲି : ଚରଣଦାସେ, ତମେ ଗୋଟାଏ ନିହାତି ମାଇଚିଆ । ତମେ ଗୋଟାଏ ସ୍ତ୍ରୀ ଲୋକଟାକୁ ବାଟକୁ ଆଣି ପାରିଲନି !

ଚରଣଦାସ : କିଏ କହିଲା ସେ ସ୍ତ୍ରୀଲୋକ ? ଆପଣ ଦେଖୁନାହାନ୍ତି, ପୂରାପୂରି ହଣ୍ଡ୍ରେଡ଼ ପର୍‌ସେଣ୍ଟ ପୁରୁଷଟାଏ !

[ସମସ୍ତଙ୍କର ହସ ଉଦ୍ଦିଷ୍ଟ ଥିଲା ଭାରତୀ ପ୍ରତି]

ବଗୁଲି : ଚରଣ, ତାକୁ ଟଙ୍କା ଦେଇଥିଲ ?

ଚରଣଦାସ : ମୋ ମୁହଁକୁ ଫୋପାଡ଼ିଲା । ପଚାରୁନାହାତି ତାକୁ...

ସଲିମ : ୟା'ପରେ ବି ତମେ ବଞ୍ଚି କରି ରହିଛ !

ଚରଣଦାସ : ରାଜନୀତିରେ ପଶିଲେ ତ ସେଗୁଡ଼ାକ ସବୁ ହଜମ କରିବାକୁ ପଡ଼ିବ, ବାବା ।

ବଗୁଲି : କିଲୋ, ଟଙ୍କା ତୋତେ ଗନ୍ଧେଇଲା ! ସରକାରୀ ଜାଗାରେ ଦୋକାନ କରିବୁ ! ବରାପିଆଜି ଗୁଲୁଗୁଲା ବିକିବୁ ! ନୁହଁ ? ସେଇଟା କ'ଣ ତୋ ବୋପା ସମ୍ପତ୍ତି ?

ଚରଣଦାସ : ବିଧବା ହେଲେ କ'ଣ ହେବ, ଦେହରେ ଭାରି ବଳ ।

ବଗୁଲି : ଶୁଣ୍, ସିଧାସଳଖ ଭାବେ ଆମ କଥାରେ ରାଜି ହେଇଯା'... । ତା' ନହେଲେ ଆମକୁ ଆଉ ଦୋଷ ଦବୁନି ।

ଭାରତୀ : ମୁଁ ସେଇଠି ଦୋକାନ କରିବି... କରିବି... । କିଏ କ'ଣ କରିବ, ମୁଁ ଦେଖିବି ।

ଚରଣ : ସାର୍, ମୁଁ କହୁନଥିଲି । ତା'ର ଭାରି ସାହସ । କଥା କଥାକେ ତ ମାରଣା ଡମ୍ପ...

ସଲିମ : ସାପକୁ କେମିତି ଜବତ କରିବାକୁ ହବ, ସେ ମନ୍ତ୍ର ବି ଆମକୁ ଜଣା । ଏଇ ଛକ ଉପରେ... ଏଇ ଷ୍ଟାଚ୍ୟୁ ସାମନାରେ ଯଦି ଆମେ...

ଚରଣ : କେହି ପିଠିରେ ପଡ଼ିବେନି । ସେଇଥିଲାଗି କହୁଛି, ଯାହା ମିଳୁଛି ସେତିକି ନେଇ ଆଉ କୋଉଠି ଦୋକାନ କର । ବଞ୍ଚିଯିବୁ ।

ଭାରତୀ : ମୁଁ ଦୋକାନଟା ଭାଙ୍ଗିଦେଲେ, ଚେୟାରମାନବାବୁ ଏଠି ମଦ ଦୋକାନ କରିବେ !

ବଗୁଲି : ଆଉ କ'ଣ ଦୁଧ ଦୋକାନ କରିଥାନ୍ତି ? ଆଲୋ ସେଇଟାକୁ ପରା ଗଭର୍ଣ୍ଣମେଣ୍ଟ ଠିକା ନେଇଛି ! ତୁ ତ ଜମା ବୁଝୁନୁ ! ମୁଁ ଆଉ କ'ଣ କରିବି, କହୁନୁ !

ଭାରତୀ : ଏଇଟା ତମମାନଙ୍କର ଗୋଟାଏ ଚାଲ । ମୁଁ ଥାନାକୁ ଯିବି । ଏତଲା ଦେବି ।

ସଲିମ : ସେ ଜାଗାଟା ବି ଆମର ।

ଭାରତୀ : କୋର୍ଟକୁ ଯିବି । ତମମାନଙ୍କୁ ଜେଲ୍ ପଠେଇବି ।

ଚରଣ : ସେଠି ଯୋଉ ଲୋକମାନେ ବସିଛନ୍ତି, ତାଙ୍କୁ ଆମ ପାର୍ଟି ପଠେଇଛି ।

ବଗୁଲି : ନ୍ୟାୟଟା ଆମ ପକ୍ଷରେ ନ ଗଲେ, ଆମେ କେମିତି ବଞ୍ଚିବୁ କହୁନୁ ।

ସଲିମ : ଘର ଭିତରେ ପୂରାଇ ପେଟ୍ରୋଲ ଢାଳିଦେଲେ ସବୁର ସମାଧାନ ହେଇଯିବ ।

ଭାରତୀ : ତମମାନଙ୍କର ଏଡ଼େ ସାହସ...

ଚରଣ : ତାହା ତ କାର୍ଯ୍ୟ ଉପରେ ଦେଖୁଛୁ । ବଞ୍ଚିବାକୁ ଯଦି ଇଚ୍ଛା ଅଛି, ଚୁପ୍‌ଚାପ୍ ପଳା ।

ସଲିମ : ହଁ, କଥାଟା ପୁଣିଥରେ ଭାବି ଦେଖ୍ ।

ବଗୁଲି : ଚବିଶି ଘଣ୍ଟା ସମୟ ଦେଲି । ଦୋକାନ ଉଠେଇନବୁ । ନଚେତ୍ ପୁଣି ଗୋଟାଏ ମହାଭାରତ ଆରମ୍ଭ ହବ । ପୁଣି ଦ୍ରୌପଦୀ ବସ୍ତ୍ରହରଣ ହବ... । ଯା'...

[ଚାଲିଯାଇଛି ଭାରତୀ, ମୁହଁରେ ଭୟର ଛାପ ।]

ଚରଣ : ତାର ସାହସ କ'ଣ କମ୍ ! ଆମ ନାଁରେ ନାଲିସ୍ କରିବ !

ସଲିମ : ନୂଆ ଚଢ଼େଇ । ଉଡ଼ା ଶିଖୁଛି ।

ବଗୁଲି : ଉଡ଼ି ଶିଖିବା ପୂର୍ବରୁ ତାର ଡେଣା ଦୁଇଟା କାଟି ଦବାକୁ ପଡ଼ିବ । ଭାରି ମଜା ହବ ।

ଚରଣ : ପୁଅଟା ବି ପୋଲିଓ ପେସେଣ୍ଟ । ଗୋଟାଏ ଅପୋଗଣ୍ଡ । କୋଉ କୁଳକୁ ନୁହଁ ।

ସଲିମ : ଇଏ ବି ଗୋଟାଏ ତାଜା ନିଉଜ୍ । କିଛି ଏପଟ ସେପଟ କଲେ– । ବାକି ଆମର ।

ବଗୁଲି : ଆଗ ସିଏ ସମୟ ଆସୁ । ଆରେ ବେସ୍ତ କାହିଁକି !

ଚରଣ : ସେ ଜାଣିନି, ସେ କାହା ସାଙ୍ଗରେ ଖେଳୁଛି ।

ସଲିମ : ତାହେଲେ ଦୋକାନଟା କୋଉଦିନ ଉଦ୍‌ଘାଟନ ହବ ?

ବଗୁଲି : ଗୋଟାଏ ଶୁଭଦିନରେ କାମଟା ହେଲେ ଭଲ । ଚରଣ, କୁହ, କେବେ ହବ ?

ଚରଣ : ଅକ୍ଟୋବର ଦୁଇ ତାରିଖଟା ହେଲେ କ୍ଷତି କ'ଣ ?

ବଗୁଲି : ବାପୁର ଜନମ ଦିନ । ଭାରି ଭଲ ହବ । ସେହିଦିନ ଉଦ୍‌ଘାଟିତ ହେବ ଆମ ଫରେନ୍ ଲିକର ସପ୍ ।

ସଲିମ : ଆଉ ଉଦ୍‌ଘାଟନ କରିବେ ଖୋଦ୍ ଆମ ନେତା ଗାଲମାଧବ ଦାସେ । ମୁଖ୍ୟମନ୍ତ୍ରୀ !

[ଚିଅର୍ସ ଭଙ୍ଗୀରେ ତିନିହେଁ]

(ମଞ୍ଚ ଅନ୍ଧକାର ହୋଇ ଆସିଛି)



# ନବମ ଦୃଶ୍ୟ

ସ୍ଥାନ — ସହରର ସେହି ଥାନା
ସମୟ — ଦିବସ
ଚରିତ୍ର — ପରମଗୁରୁ, ମାଲପାଣି,
ରାମୁ, ଭାରତୀ

[ସହରତଳି ସେହି ଥାନା । ଗଭୀର ଚିନ୍ତାରେ ନିମଗ୍ନ ଥିଲେ ପୁଲିସ୍ ଇନ୍‌ସପେକ୍ଟର ପରମଗୁରୁ । କ'ଣ କରିବେ କିଛି ଭାବିପାରୁ ନଥିଲେ । ବାହାରୁ ରାମୁକୁ ପିଟି ପିଟି ଆଣିଛି ମାଲ୍‌ପାଣି । ରାମୁ ଏ ସବୁରୁ କିଛି ବୁଝିପାରୁନି...]

ମାଲପାଣି : 'ସାର୍'... 'ସାର୍'...

ପରମଗୁରୁ : କ'ଣ ହେଲା ?

ମାଲପାଣି : ଆଣିଛି ସାର୍ । ବଡ଼ କଷ୍ଟରେ ଯା'ର ସନ୍ଧାନ ପାଇଲି ।

ପରମଗୁରୁ : ଏ ଜନ୍ତୁଟି କିଏ ?

ମାଲପାଣି : ସିଏ ଏମିତି ସେମିତି ଜନ୍ତୁ ନୁହେଁ । ଭାରି ସାଂଘାତିକ । ଦେଖୁନାହାନ୍ତି ତା' ଥୋବଡ଼ାକୁ ।

ରାମୁ : ମାମୁଘର କୋ... କୋ... କୋଉଠି ?

ମାଲପାଣି : ପୁଅ ମାମୁଘର ଦେଖିବାକୁ ମନ ବଳେଇଛି । ଦେଖ୍... ଦେଖ୍... । ଭଲ କରି ଆଖି ପୂରେଇ ଦେଖ୍ । ହେଲେ ଇଏ ମାମୁଘର ସିଏ ମାମୁଘର ନୁହେଁ । ମାମୁଘରକୁ ଜଣେ ଗଲେ ଫେରିପାରିବ, ହେଲେ ଏ ମାମୁଘରକୁ ଥରେ ଆସିଲେ, ଆଉ ପଛକୁ ଫେରିବା ସହଜ ନୁହେଁ... । ବୁଝିଲୁ ?

[ମୁଣ୍ଡ ଟୁଙ୍ଗାରି ହଁ' ମାରିଛି ରାମୁ । ସେ କିଛି ବୁଝିପାରିନି । ହୋ ହୋ ହୋଇ ହସିଛି ]

ପରମଗୁରୁ : ଆରେ ଏଇଟା ସତରେ ତ ଗୋଟାଏ ଜାନୁଆର ।

ମାଇପାଣି : ଦେଖୁନାହାନ୍ତି ସାର୍, କେମିତି ବଡିଶି ଦାନ୍ତ ଦେଖଉଛି !

ରାମୁ : ମାମୁ କା... କା... କାହିଁ ?

ମାଲପାଣି : ଧୈର୍ଯ୍ୟ ଧର ବାବା । ମାମୁ... ମାଇଁ... ଅଜା... ଆଉ ସମସ୍ତେ ଆସିବେ ।

ପରମଗୁରୁ : ୟା'କୁ କାହିଁକି ଆଣିଛ ?

ମାଲପାଣି : ସାର୍, ଇଏ ହଉଛି ସେହି ମହାମାନବ, ଯାହାକୁ ପୁଲିସ୍ ଡିପାଟମେଣ୍ଟ ଦୀର୍ଘଦିନ ହେଲା ଖୋଜୁଥିଲା । ଭାଗ୍ୟକୁ ଏ ଜାନୁଆର ଧରା ପଡ଼ିଗଲା ।

ପରମଗୁରୁ : 'ମାନେ' ? କ'ଣ କହୁଛ ?

ମାଲପାଣି : ସାର୍, ଏଇ ଟୋକା ସେଦିନ ଆମ ନେତାଙ୍କ ଉପରକୁ ଟେକା ପକେଇଥିଲା ।

[ସ୍ତମ୍ଭୀଭୂତ ହୋଇ ଇନ୍‌ସପେକ୍ଟର ଚାହିଁଛନ୍ତି ରାମୁକୁ । ସେ ବିଶ୍ୱାସ କରିପାରି ନାହାନ୍ତି ]

ପରମଗୁରୁ : କ'ଣ ତମେ କହୁଛ ? ଯିଏ ସିଧା ହେଇ ଠିଆ ହୋଇପାରୁନି, ସିଏ ପୁଣି ଟେକା ଫିଙ୍ଗିବ ?

ମାଇପାଣି : ଆଜ୍ଞା ଜାଣିନାହାନ୍ତି । ଛୋଟ ସାପର ଭାରି ବିଷ । ଏଇଟା ଗୋଟାଏ ସାପ । ଗୋଖର ସାପ ।

ପରମଗୁରୁ : ମୁଁ ଭାବିପାରୁନି । ଏ ପିଲା ପୁଣି ମୁଖ୍ୟମନ୍ତ୍ରୀଙ୍କ ଉପରକୁ ଢେଲା ପକେଇବ ? ନା... ନା'... । ୟା' କେବେ ହୋଇପାରେନା ।

ମାଇପାଣି : ସାର୍, ଦି' ପାହାର ବସିଲେ ସିଏ ସବୁକଥା ଆପଣାଛାଏଁ ମାନିଯିବ ।

ପରମଗୁରୁ : ଏ ପିଲା, ତୋ ନାଁ କ'ଣ ?

ରାମୁ : ରା... ରା... 'ରାମୁ' ।

ପରମଗୁରୁ : ରାମୁ, ତୁ ସେଦିନ ନେତାଙ୍କ ଉପରକୁ ଟେକା ପକେଇଥିଲୁ ? ମୁଖ୍ୟମନ୍ତ୍ରୀଙ୍କ ଉପରକୁ !

ରାମୁ : ଟେ... ଟେ... ଟେକା ?

ପରମଗୁରୁ : 'ହଁ' । ପକେଇଥିଲୁ ?

ରାମୁ : 'ନା'... ।

ମାଳପାଣି : ପକ୍କା ଚୁପସଇତାନ୍ । (ଦି ଗୋଇଠା ମାରି)

ରାମୁ : ମା... ମା... ମାରେନି ।

ପରମଗୁରୁ : ସତ କଥା ମାନିଯା ।

ମାଳପାଣି : ମିଛ କହିଲେ ଖୁଆଡ଼ ଭିତରେ ପୂରେଇ ତୋ ହାତଗୋଡ଼ ଚୂନା କରିଦେବି ।

ପରମଗୁରୁ : ମାନିଯା' ରାମୁ । ଟେକା ପକେଇଥିଲୁ ?

ରାମୁ : 'ନା'... ।

[ରାମୁର ତଣ୍ଟିକୁ ଧରି ମାଳପାଣି ପିଟିବାରେ ଲାଗିଛି ]

ମାଳପାଣି : କ'ଣ କହିଲୁ, ପକେଇ ନଥିଲୁ ? ପୁଲିସ୍ ସାଙ୍ଗରେ ଧପାବାଜି ? ହଇବେ ମୋ ସାଙ୍ଗରେ ନଖରାମି !

ପରମଗୁରୁ : କ'ଣ ପାଇଁ ଟେକା ପକେଇଥିଲୁ ?

ରାମୁ : ଗା... ଗା... ଗାଲୁଆ ।

ମାଳପାଣି : ଦେଖୁଛନ୍ତି ସାର୍, କ'ଣ କହୁଛି ? ହଇବେ ତୋର ତ ଭାରି ସାହସ ।

ପରମଗୁରୁ : ଭଲରେ ଭଲରେ କହିଦେ । ଆଦୌ ମାଡ଼ ହବନି ।

ରାମୁ : 'ନା'... 'ନା'...

ମାଳପାଣି : ସାର୍, ମୁଁ ଜାଣେ ସିଧା ଆଙ୍ଗୁଳିରେ ଘିଅ ଉଠିବନି । ସେ କେମିତି ମାନିବ, ସେ ରାସ୍ତା ମତେ ଜଣା । ଚାଲ୍, ଶଳା ଚାଲ୍...

[ଥାନା ହାଜତ ଭିତରକୁ ନେଇଯାଇଛି ରାମୁକୁ ମାଳପାଣି । ପଛେ ପଛେ ପରମଗୁରୁ ଯାଇଛନ୍ତି । ଟେବୁଲ ଉପରେ ରାମୁକୁ ଶୁଆଇ ତାର ଗଣ୍ଠିକୁ ପିଟୁଛନ୍ତି । ଯନ୍ତ୍ରଣାରେ ଚିତ୍କାର କରିଛି ରାମୁ । Red Light on the spot । ଧଇଁସଇଁ ହୋଇ ହାଜତରୁ ବାହାରି ଆସିଛନ୍ତି ପରମଗୁରୁ ]

ପରମଗୁରୁ : କି ଭୟଙ୍କର ଏମାନେ !

ମାଲପାଣି : ଚାଲ୍... ଚାଲ୍‌ବେ ।

[ଠେଲି ଦେଇଛି ହାଜତ ଦୁଆର ମୁହଁରୁ ରାମୁକୁ ମାଲପାଣି । ରାମୁ ପଡ଼ିଛି ଥାନା ଭିତରକୁ ]

ପରମଗୁରୁ : ଏଇନେ ଠିକ୍ ବାଟକୁ ଆସିଯିବ । ମାଲ୍‌ପାଣି ଦେଖିଲ, ମରିଗଲା ନା' କ'ଣ ?

ମାଲପାଣି : ନା' ସାର୍ । ନିଃଶ୍ୱାସ ପ୍ରଶ୍ୱାସ ଚାଲିଛି । ଚରଣଦାସ ସାହାଯ୍ୟ କରି ନଥିଲେ, ଏ ଆସାମୀକୁ ଧରି ହୋଇ ନଥାନ୍ତା । ଏଇଟା ବଦମାସୀ ନମ୍ବରଓ୍ୱାନ୍ ।

ପରମଗୁରୁ : 'ଚରଣଦାସ' !

[ନିଜକୁ ବାରମ୍ବାର ପଚାରିଛନ୍ତି ପୁଲିସ ଇନ୍‌ସପେକ୍ଟର ]

ମାଲପାଣି : ବଡ଼ କଷ୍ଟରେ ତାକୁ ଧରିଛି । ଅନ୍ଧାର ଘର ଭିତରେ ଲୁଚିଲା । ଆଦୌ ବାହାରିଲାନି । ବହୁତ ଖୋଜାଖୋଜି ପରେ ଅମାର ଭିତରୁ ତାକୁ ବାହାର କରିଛି ।

[ଥାନା ଭିତରକୁ ଧସେଇ ପଶିଛି ଭାରତୀ ]

ଭାରତୀ : ଇନିସ୍‌ପେକ୍ଟରବାବୁ, ମୋ ପୁଅକୁ ବଞ୍ଚାନ୍ତୁ । ତାକୁ ଚରଣଦାସ ଧରିଆଣିଛି । (ଦୃଷ୍ଟି ପଡ଼ିଛି ରାମୁ ଉପରେ) 'ରାମୁ'... 'ରାମୁ'... !

ରାମୁ : (ନୀରବ)

ଭାରତୀ : ସିଏ କିଛି କହୁନି କାହିଁକି ? ତାର କ'ଣ ହେଇଛି ?

ପରମଗୁରୁ : ଇଏ ତାହେଲେ ତମ ପୁଅ ?

ଭାରତୀ : ଇନିସପେକ୍ଟରବାବୁ, ତାକୁ ଏଠିକି କାହିଁକି ଆଣିଛନ୍ତି ?

ମାଲପାଣି : କାହିଁକି ଆସିଛି, ସେ କଥା ଜାଣିପାରୁନା । ଗୁଣମଣି ନେତାଙ୍କ ଉପରକୁ ଟେକା ଫିଙ୍ଗିଛି ।

ଭାରତୀ : ଆପଣମାନଙ୍କ ମୁଣ୍ଡ ଠିକ୍ ଅଛି ତ ? କାହାକୁ କ'ଣ କହୁଛନ୍ତି ? ରାମୁ, ପୁଣି ଟେକା ଫିଙ୍ଗିବ !

ପରମଗୁରୁ : ହଁ, ସେ ଟେକା ଫିଙ୍ଗିଛି । ମୁଖ୍ୟମନ୍ତ୍ରୀଙ୍କ ଉପରକୁ ।

ମାଲପାଣି : ଟେକା ନୁହେଁ, ପଥର ।

ଭାରତୀ : ନା'... ତା' କେବେ ହୋଇପାରେନା । ରାମୁ କ'ଣ, ସେ କଥା ମୁଁ ଜାଣେ । ସେ ଏମିତି କରିପାରିବନି ।

ପରମଗୁରୁ : ପ୍ରଥମେ ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହେଇଥିଲି ।

ଭାରତୀ : ମୁଁ ତାକୁ ପଚାରୁଛି । ସେ ନିଶ୍ଚୟ ମାନିଯିବ । ମୋ ଆଗରେ ସେ କେବେ ମିଛ କହିବନି ।

ପରମଗୁରୁ : ପଚାର । ହୁଏତ ତମକୁ ସତ କଥା କହିପାରେ !

ଭାରତୀ : ରାମୁ... ରାମୁ... ।

ରାମୁ : (କାନ୍ଦିଛି)

ଭାରତୀ : ବାବା, ସତ କଥା କହିଦେ ।

ମାଲପାଣି : ପକ୍କା ବଦମାସ୍ ଅଛି ।

ଭାରତୀ : ମାନିଯା'ବାବା । ମୁଁ ଜାଣିଛି, ତୁ ପକେଇନୁ । ସତ କଥା କହିବାକୁ ଡରୁଛୁ କାହିଁକି ?

ରାମୁ : ଭୋ... ଭୋ... ଭୋକ ।

ଭାରତୀ : ଖାଇବାକୁ ଦେବି । ତୁ ସତକଥା ମାନିଯା ।

ରାମୁ : ମା... ମା... ମାରିବେ ।

ଭାରତୀ : ସତ କଥା କହିଦେ । କେହି ମାରିବେନି ।

ପରମଗୁରୁ : କହ... । ହଁ, କହ । ମାଡ଼ ହବନି ।

ମାଲପାଣି : ମୁଁ ଭଲଭାବେ ଜାଣିଛି, ସାର୍ । ଏ କାମ ତା' ଛଡ଼ା ଆଉ କେହି କରିନଥିବେ ।

ଭାରତୀ : ନା' ଇନିସପେକ୍ଟରବାବୁ । ରାମୁକୁ ମୁଁ ଭଲଭାବେ ଜାଣେ । ସେ କେବେ ଏମିତି କାମ କରିବନି । କହ, ବାବା । ତୁ ଟେକା ପକେଇଛୁ ?

ରାମୁ : (ନୀରବ)

ପରମଗୁରୁ : କହିଦେ ।

ମାଲପାଣି : କହ । ସତ ମାନିଯା ।

ଭାରତୀ : କହିଦେ, ରାମୁ । ଟେକା ପକେଇଛୁ ?

ପରମଗୁରୁ : କହିବୁ ନା' ନାହିଁ ?

**[ରାମୁ ମୁଣ୍ଡ ଟୁଙ୍ଗାରିଛି ବିବ୍ରତ ହୋଇ ]**

ମାଲପାଣି : ମୁଁ କହୁନଥିଲି, ସାର୍ ।

ପରମଗୁରୁ : ଦେଖିଲ ତ ।

ଭାରତୀ : ତୁ ନେତାଙ୍କ ଉପରକୁ ଟେକା ପକେଇ ପାରିଲୁ । କାହିଁକି ପକେଇଲୁ ? (ମାରିଛି) କାହିଁକି... କ'ଣ ପାଇଁ ? ଇନିସ୍‌ପେକ୍ଟରବାବୁ, ତାକୁ ମାରି ମାରି ମାରିଦିଅନ୍ତୁ । ଏମିତି ପୁଅ ମୋର ଦରକାର ନାହିଁ । ମର...ତୁ ମରିଯା । ତୋ ପାଇଁ ମୁଁ ଭାରି ହୀନସ୍ତା ହେଲିଣି ।

**[ମାରିଛି ଭାରତୀ, କଇଁ କଇଁ ହୋଇ କାନ୍ଦିଛି ରାମୁ ]**

ପରମଗୁରୁ : ମୁଁ ବି ପ୍ରଥମେ ବିଶ୍ୱାସ କରିନଥିଲି । ଏଭଳି ପିଲା ଏତେବଡ଼ କାମ କରିବ ! ମୁଁ ଭାବିପାରି ନଥିଲି ।

ଭାରତୀ : (କାନ୍ଦି କାନ୍ଦି) ଇନିସ୍‌ପେକ୍ଟରବାବୁ, ମୋ ମନ କହୁଛି, ରାମୁ ଏମିତି କାମ କରିନି । ତାକୁ ଛାଡ଼ି ଦିଅନ୍ତୁ ।

ମାଲପାଣି : ଏତେ ଦିନ କାଳ ଖୋଜି ଖୋଜି ଅପରାଧୀକୁ ଧରିବା ପରେ, ଛାଡ଼ିଦବୁ ? ବାଃ... ବଢ଼ିଆ ବିଚାର ! ଏଠି ମା'ର ମମତା କିଛି କାମ ଦବନି ।

ଭାରତୀ : ରାମୁ ମୋର ଗୋଟିଏ ବୋଲି ପୁଅ ।

ପରମଗୁରୁ : ଫଇସଲା କୋର୍ଟ କରିବ । ମୋ ହାତରେ କିଛି ନାହିଁ ।

ମାଲପାଣି : କୋର୍ଟକଚେରି କଥାରେ ଆମେ କାହିଁକି ମୁଣ୍ଡ ପୂରେଇବୁ ? ଅପରାଧୀକୁ ଧରିବା ହେଲା ଆମ କାମ । ଦଣ୍ଡ ବିଧାନ କରିବା କୋର୍ଟର କାମ ।

ପରମଗୁରୁ : ରାମୁ ଏମିତି କାମ କରିବ, ମୋ ଧାରଣାର ବାହାରେ ଥିଲା ।

ମାଲପାଣି : ନେତାଙ୍କ ଉପରକୁ ଟେକା ପକେଇବାଟା ଛୋଟିଆ ଅପରାଧ ନୁହଁ । ତାପରେ ପୁଣି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ।

ପରମଗୁରୁ : ଭାରତ ସ୍ୱାଧୀନ ହେବାର ୫୦ ବର୍ଷ ଭିତରେ ଏମିତି କେବେ ଘଟିନଥିଲା ।

ଭାରତୀ : ଇନିସପେକ୍ଟରବାବୁ, ମୋ ମନକହୁଛି ଏଇଟା କିଛି ଲୋକଙ୍କର ଗୋଟାଏ ଚକ୍ରାନ୍ତ । ମୋ ଦୋକାନ ଭାଙ୍ଗିଲେ । ମୁଁ କେଶ୍ କଲି । ଏଇଟା ସେହିମାନଙ୍କର କାମ ।

ମାଲପାଣି : ଏଠି ସେଗୁଡ଼ାକ ବକି କିଛି ଲାଭ ନାହିଁ ।

ଭାରତୀ : ଇନିସପେକ୍ଟରବାବୁ, ସ୍ୱାଧୀନ ଭାରତରେ ଜଣେ ସାଧାରଣ ନାଗରିକ କ'ଣ ବଞ୍ଚିପାରିବନି ? କ'ଣ ପାଇଁ ତାହେଲେ ଏ ସ୍ୱାଧୀନତା ଆସିଥିଲା ? କାହାପାଇଁ ଆସିଥିଲା ? କାହାପାଇଁ ?

[ଆଲୋକ କେନ୍ଦ୍ରୀଭୂତ ହୋଇଛି ଭାରତୀ ଉପରେ]

(ଧୀରେ ଧୀରେ ମଞ୍ଚ ଅନ୍ଧକାର ହୋଇଆସିଛି)

❑❑❑

# ଦଶମ ଦୃଶ୍ୟ

ସ୍ଥାନ — ସେହି ଛକ

ସମୟ — ରାତିର ଉତ୍ତୀର୍ଣ୍ଣ ପ୍ରହର

ଚରିତ୍ର — ଚରଣ, ବଗୁଲି, ସଲିମ,
ଗାଲମାଧବ, କିଛିଲୋକ

[ସହରର ସେହି ବହୁଚର୍ଚ୍ଚିତ ଛକ । ପ୍ରତିମୂର୍ତ୍ତି ପାଖରେ ବସି ସିଗାରେଟ ଟାଣୁଥିଲା ବଗୁଲି ଦାସ । ଅନ୍ତରାଳରୁ ଲୋକମାନଙ୍କର କୋଳାହଳ ଶୁଭୁଛି । ନୂଆ ଦୋକାନ ଘର ତିଆରିର ସୂଚନା । ବଗୁଲିର ସେ ଦିଗକୁ ଦୃଷ୍ଟିନାହିଁ । ସେ ନିର୍ବିକାର ଭାବେ ଧୂଆଁ ଛାଡ଼ି ଚାଲିଛି । ଭିତରୁ ଚରଣଦାସ ଏବଂ ଲୋକଙ୍କ କଥାବାର୍ତ୍ତାର କିଛି ଅଂଶ ଶୁଭିଲା ]

ଚରଣ : ଆବେ ଟିକିଏ ଖାଇଲା ଭଳିଆ କାମ କର । ଦେ' ହାତ ଲଗା ।

ଲୋକ : ରାତି ସାରା ଖଟେଇ ଖଟେଇ ମାରିଲଣି । କେତେ ଟଙ୍କା ଓଜାଡ଼ି ପକେଇବ ଯେ । ଜଳଖିଆ ଦବ ଦବ ବୋଲି ଆସି ରାତି ପାହିବାକୁ ବସିଲାଣି ।

ଚରଣ : କେତେ ବକୁଛୁ ବେ ! ତୁ କ'ଣ ମାଗଣା ଖଟୁଛୁ ? ଟଙ୍କା ନେଲାବେଳକୁ ହାତଟା ଆଗ ଧଡ୍ କରି ବଢ଼େଇ ଦବୁ । ହଇରେ ସେ ଫାଜିଲାମି ବନ୍ଦ କରି ହାତ ଫୁର୍ତ୍ତିକର । ଦେଖିଲୁ... ଦେଖିଲୁ... ସେ ବୋତଲଟା 'ମଦ ବୋତଲ' ଭଳି ଦେଖାଯାଉଛି ? ଏତେ ଠକିବ ! ଛି... ଛି... !

[ଅନ୍ତରାଳରେ କିଛି ଗୋଟାଏ ପଡ଼ିବାର ଶବ୍ଦ ଶୁଭିଛି । କେହି ଜଣେ କାମ କରୁକରୁ ଖସିପଡ଼ିଛି । ଶ୍ରମିକମାନଙ୍କର କୋଳାହଳ ତେଜି ଉଠିଛି ]

ବଗୁଲି : ଆବେ ଚରଣିଆ, [illegible] ହେଲାରେ ? କାହିଁକି ଏତେ ଜୋର୍‌ରେ ପାଟି ହଉଛି ?

ଚରଣ : (ଭିତରୁ) ନାଇଁ... ନାଇଁ... । ସବୁ ଠିକ୍ ଅଛି ।

ବଗୁଲି : ଆବେ ମୋର କାମ ଦରକାର । ଆଜି ରାତି ଭିତରେ ଯେମିତି ସବୁ କାମ ସରିବ । ଆରେ ସେମାନଙ୍କୁ କିଛି ଦେଇଦେ । ଖାଆନ୍ତୁ । ନ ଖାଇଲେ କି କାମ କରିବେ ! ମୂର୍ଖ କୋଉଠିକାର !

[ସଲିମ୍ ଆସିଛି । ହାତରେ ସିଗାରେଟ ପ୍ୟାକେଟ୍ । ଫରେନ୍ ସିଗାରେଟ୍ ]

ବଗୁଲି : ଆସ... ଆସ... ସଲିମ୍ । ମୁଁ ତମକୁ ଅପେକ୍ଷା କରିଥିଲି । ପାଇଲ ?

ସଲିମ : ହଁ ! ଭଗତ ଦୋକାନରେ ମିଳିଲା । ଟଙ୍କା ଦେଲି । ନେଲାନି । ଚେୟାରମ୍ୟାନଙ୍କ ନାଁ ଶୁଣି ମନାକଲା ।

ବଗୁଲି : 'ଗୁଡ୍'... । ଉନ୍ନତିର ଲକ୍ଷଣ ।

[ସଲିମ୍ ହାତରୁ ସିଗାରେଟ ନେଇ ଲଗାଇଛି ବଗୁଲି ଦାସ । ଧୂଆଁ ଛାଡ଼ିଛି ]

ବଗୁଲି : ଯେତେ ବୁଝେଇଲି, ଏ ଚରଣିଆଟା ହେଲାନାହିଁ । ପାଞ୍ଚଟା ପଇସା ସେ କୁଲିଙ୍କୁ ଛାଡୁନି । ଆରେ ଚେୟାରମ୍ୟାନର ଦୋକାନ । ଲୋକେ ଖାଇବେ । ଖାଆନ୍ତୁ । ନ ଖାଇଲେ, କାମ କରିବେ କେମିତି !

ସଲିମ : ଚରଣଦାସେ ଆମର ମୋଟାବୁଦ୍ଧିଆ ।

[ଅନ୍ତରାଳରୁ କୋଳାହଳ ତେଜି ଉଠିଲା ]

କିଛି ଗୋଟାଏ ଅସୁବିଧ ହେଲା ବୋଧେ !

ବଗୁଲି : ମୁଁ ପାଣି ଭଳିଆ ଟଙ୍କା ଉଡ଼ଉଛି । ମୋର କାମ ଦରକାର । ଆଜି ରାତିରେ ।

ସଲିମ : କାମ ତ ଶେଷ ହେବା ଉପରେ । ମୁଁ ଦେଖିଆସେ, ଚରଣଦାସେ କ'ଣ କରୁଛନ୍ତି ।

ବଗୁଲି : ଆରେ ଏଇଟା କ'ଣ ମୁଁ ଏକା ଖାଇବି ? ବିଦେଶୀ ସିଗାରେଟ !

ସଲିମ : ସାର୍, ଆପଣ—?

ବଗୁଲି : ଆରେ ମହାପୁରୁଷ କହିଛନ୍ତି, ପ୍ରସାଦ ବାଣ୍ଟିଣ ଖାଇବ । ଏଠି ସ୍ଥାନ-କାଳ-ପାତ୍ରର ଫରକ ଆସିଲା କୋଉଠୁ ? ଏ ସବୁରେ କମ୍ପାନୀ ନିହାତି ଦରକାର ।

ସଲିମ : ଗୋଟେ ଦିଅନ୍ତୁ ।

ବଗୁଲି : ହଁ, କଥାଟା ମୋ ମନକୁ ପାଇଲା ।

[ସିଗାରେଟ୍‌ରେ ଅଗ୍ନି ସଂଯୋଗ କରିଛି ସଲିମ୍ ]

ବଗୁଲି : ଆରେ ସେଦିନ କାହା କଥା କହୁଥିଲୁ ?

ସଲିମ : କରିମ୍‌ଟା କୋଉ କୁଳର ହେଲାନାହିଁ । ତିନିଥର ବି.ଏ. ପରୀକ୍ଷା ଦେଇ ମାଙ୍କଡ଼୍‌ଚିତ୍ ମାରିଲା । ତାକୁ ଆମ ମୁନିସିପାଲିଟିରେ ଭୁକେଇ ଦେଲେ ବିଚରା ବଞ୍ଚିଯାନ୍ତା !

ବଗୁଲି : ଠିକ୍ ଅଛି । କରିମ୍ ଚାକିରି ପାଇବ । ଅଫିସର ହବ ।

ସଲିମ : ଅଫିସର ହବ ! ହେଲେ ସିଏ ତ ବି.ଏ. ପାସ୍ କରିନି !

ବଗୁଲି : ଚାକିରି ପାଇଁ ବି.ଏ./ଏମ୍.ଏ. ଗୋଟାଏ କ୍ୱାଲିଫିକେସନ ନୁହେଁ । ତମେ ମୋ ପାଇଁ ବହୁତ କରିଛ । ଆଉ ମୁଁ ଏତିକି କରିପାରିବିନି ? ତାକୁ କହିବ, ତିନି ତାରିଖ ଦିନ ମତେ ଦେଖାକରିବ ।

ସଲିମ : ମୋ ଲାଇନ୍‌ରେ ତାକୁ ପୂରେଇବାକୁ ଭଲ ଲାଗିଲାନି । ଦୁଇଭାଇ ଗୋଟିଏ ପ୍ରକାର କାମ କରିବୁ । ମନ ବଳିଲାନି ।

ବଗୁଲି : କରିମ୍ କଥା ମତେ ଲାଗିଲା ।

ସଲିମ : ମୋର ଗୋଟାଏ ବଡ଼ ଚିନ୍ତା ଗଲା । ହଁ ନେତା କାହିଁକି ଭାରି ଖୋଜୁଥିଲେ ।

ବଗୁଲି : କେଇଟା ଦିନଗଲେ ଗାନ୍ଧିଜୟନ୍ତୀ । କୋଉଠି ଫିତା କାଟିବାକୁ ଥିବ !

ସଲିମ : ମୁଁ ଦେଖେ, ଦୋକାନ କାମ କେତେ ବାଟ ଗଲା ।

ବଗୁଲି : ତମରିମାନଙ୍କ ଭରସାରେ ସେଇଟା ଖୋଲାହଉଛି । ତମେସବୁ ତାକୁ ଚଳେଇବ । ଦୋକାନଟା ତ ତମମାନଙ୍କର ।

ସଲିମ : ସବୁ ଦୋକାନ ବନ୍ଦ ହେଇଯିବ । କେବଳ ଏଇ ଗୋଟାଏ ଦୋକାନ ଚାଲିବ... ।

[ଚାଲିଯାଉଛି ସଲିମ୍ । ବଗୁଲି ମୁଖମଣ୍ଡଳରେ ହସର ରେଖା ଫୁଟିଉଠିଲା ]

ବଗୁଲି : ହଁ, ତାହାହିଁ ହେବ । ବଗୁଲି ଦାସ ହବ ମେହଫିଲ୍‌ର ବାଦ୍‌ଶାହା । ଆସର ଜମିବ । ଦରବାର ବସିବ ।

[କାର୍ ଅଟକିବା ଶବ୍ଦ ହେଲା । ପ୍ରବେଶ କଲେ ଗାଲମାଧବ]

ଗାଲମାଧବ : ଆରେ ଗୁଲ, ଏ ସବୁ କ'ଣ ହଉଛି ! ତୁ ମତେ ଏଠି ରଖେଇ ଦବୁନି କି ?

ବଗୁଲି : କ'ଣ ହେଇଛି, କହୁନୁ ।

ଗାଲମାଧବ : କ'ଣ ନ ହେଇଛି, କହୁନୁ । ଆଜି ପେପର ଦେଖିଛୁ ? କ'ଣ ସବୁ ସେଥିରେ ବାହାରିଛି, ଦେଖିଛୁ ?

ବଗୁଲି : ଗାଲୁଆ, କାହିଁକି ସେ ଫାଲ୍‌ତୁ ପେପରରେ ମୁଣ୍ଡ ପୂରଉଛୁ ? ପେପରରେ ଯୋଉ ଖବରଗୁଡ଼ାକ ବାହାରୁଛି, ସେଗୁଡ଼ାକ ଦେଶବାସୀଙ୍କ ପାଇଁ । ଦେଶର ସାଧାରଣ ଜନତାଙ୍କ ପାଇଁ । ଆମମାନଙ୍କ ପାଇଁ ଆଦୌ ନୁହେଁ ।

ଗାଲମାଧବ : ସହରଯାକ ସବୁଠି ଏଇ ଚର୍ଚ୍ଚା । ଏ ଜାଗାଟାରେ ତୋର ମଦଦୋକାନଟା କରିବା ଠିକ୍ ହେଲାନି ।

ବଗୁଲି : ତୋ ମୁଣ୍ଡଟାକୁ ସେ ବାଜେ ପେପରଗୁଡ଼ାକ ଖରାପ କରିଦେଇଛନ୍ତି । ଆରେ ଆମେ ତ ଠିକ୍ କଲେ, ଏ ବର୍ଷଠାରୁ ନିଶା କାରବାର ପୁଣି ଆରମ୍ଭ ହବ । ପ୍ରଥମ ଶୁଭାରମ୍ଭଟା ଆମଠାରୁ ହଉ । ତୁ ସବୁକଥାରେ ଡରିଯାଉଛୁ କାହିଁକି ? ମୁଁ ଅଛି ।

ଗାଲମାଧବ : ତୁ କଥାଟା ଆଦୌ ବୁଝୁନୁ । ଗାନ୍ଧିଛକରେ, ପୁଣି ଚେୟାରମାନଙ୍କ ମଦ ଦୋକାନ । ତାହା ପୁଣି ଖୋଲୁଛି ଗାନ୍ଧିଜୟନ୍ତୀରେ ।

ବଗୁଲି : ଦୋକାନର ଉଦ୍‌ଘାଟକ ବି ତୁ । ମାନେ ଖୋଦ୍ ମୁଖ୍ୟମନ୍ତ୍ରୀ ଗାଲମାଧବ ଦାସ । ଏ ଦେଶର ନେତା ।

ଗାଲମାଧବ : ପେପରବାଲା ମତେ ବସେଇ ଉଠେଇ ଦେବେନି ।

ବଗୁଲି : ତୁ ଭୋରୁ ଭୋରୁ କାମ ସାରିଦବୁ । କୋଉ ସାମ୍ବାଦିକ କ'ଣ ଲେଖିବ, ସେ କଥା ମୁଁ ବୁଝିବି ।

ଗାଲମାଧବ : ଏ ଜାଗାଟା ଉପରେ ସମସ୍ତଙ୍କର ଦୃଷ୍ଟି । କିଏ କେତେବେଳେ ଯେ କୋର୍ଟକୁ ଯିବ...

ବଗୁଲି : ତାହେଲେ, ଏ ଗାନ୍ଧି ମୂର୍ତ୍ତିଟାକୁ ଏଠୁ ଉଠେଇଦେଲେ ହବ । ଗୋଟାଏ ଭଲ ଜାଗା ଦେଖି,ଗଳିରେ ବସେଇଦେବି । ଗାନ୍ଧିଙ୍କ ଭଳି ମହାପୁରୁଷ ଏଠି କାହିଁକି ଖରାବର୍ଷାରେ ଫୁଙ୍ଗୁଳା ପଡ଼ି ରହିବେ ? ତାଙ୍କର ତ ପୁଣି ଗୋଟାଏ ପ୍ରେଷ୍ଟିଜ୍ ଅଛି...

ଗାଲମାଧବ : ତୁ ମୋ ପରିସ୍ଥିତି କଥା ବୁଝୁନୁ ।

ବଗୁଲି : ମୁଁ ଜାଣେ, ତୋ ମୁଣ୍ଡରେ ଏଇନେ ପେପର ଭୂତ ପଶିଛି । ପେପରବାଲାଙ୍କୁ କେମିତି କ'ଣ କାବୁ କରାଯିବ, ସେ ବାଟ ମତେ ଜଣା । ପଇସା ଫେଙ୍କୋ, ତମାସା ଦେଖୋ । ବୁଝିପାରିଲୁ ?

ଗାଲମାଧବ : ତେଣେ ନିତାଇରାମ୍‌ଟା ମୋତେ ନାକେଦମ୍ କଲାଣି ।

ବଗୁଲି : ନିତାଇରାମ୍ ବଞ୍ଚିଛି ?

ଗାଲମାଧବ : ହଁ, ସିଏ ଆଉରି ଗୋଟାଏ ହେଡ୍‌ଏକ୍ ।

ବଗୁଲି : ଶୁଖିଲା ପତର ! ଟିକିଏ ପବନରେ ଖସିପଡ଼ିବ ! ତା' ପାଇଁ ଗୋଟାଏ ଚିନ୍ତା କ'ଣ ? କହିବୁ ଯଦି, ତା' ନିଶ୍ୱାସ ପ୍ରଶ୍ୱାସ ବନ୍ଦ କରିଦବା ।

ଗାଲମାଧବ : ଗୁଲ, ଟିକିଏ ଦେଖି ଚାହିଁ କାରବାର କର । ମୁଁ ଯାଉଛି, ବୁଢ଼ାଟା କାହିଁକି ଖବର ଦେଇଛି । ସ୍ୱାଧୀନତା ସଂଗ୍ରାମୀ ତ...

ବଗୁଲି : ବୁଢ଼ାକୁ ମୋ ଶୁଭେଚ୍ଛା ଜଣେଇଦବୁ । ସମୟ ପାଇଲେ ଦୋକାନ ଆଡ଼େ ବୁଲି ଆସିବାକୁ କହିବୁ ।

**[ଉଭୟଙ୍କର ହସ]**

(ମଞ୍ଚ ଅନ୍ଧକାର)



# ଏକାଦଶ ଦୃଶ୍ୟ

ସ୍ଥାନ — ବରା ଦୋକାନ

ସମୟ — ଦିବସ / ସକାଳ

ଚରିତ୍ର — ଚରଣଦାସ, ଭାରତୀ

[ବିଧବା ଭାରତୀର ବରା ପିଆଜି ଦୋକାନ । ଅଯତ୍ନବିନ୍ୟସ୍ତ ଭାବେ ଜିନିଷପତ୍ର ବିକ୍ଷିପ୍ତ ହୋଇ ପଡ଼ିଛି । ଭଙ୍ଗାରୁଜା ହୋଇଛି । କିଛି ସମୟ ପୂର୍ବରୁ କେହି ଯେମିତି ଦୋକାନକୁ ଚୂରମାର କରି ଦେଇଯାଇଛି । ଦୋକାନର ଭଗ୍ନସ୍ୱାସ୍ଥ୍ୟକୁ ଆହୁରି ରସସିକ୍ତ କରିଛି କରୁଣ ରାଗିଣୀ । ବିଛାଡ଼ି ହୋଇ ପଡ଼ିଥିବା ଜିନିଷପତ୍ରକୁ ଗୋଟାଉଥିଲା ଭାରତୀ । ଆଖିରେ ଭରା ଲୁହ ]

ଭାରତୀ : ମୋ ଦୋକାନ ଯିଏ ଭାଙ୍ଗିଲା । ତମୁକୁ ଧରମ ସହିବନି । ଗରିବ ଦାନାରେ ପାହାର ଦେଇଛ । ତମୁକୁ ଖାଇବାକୁ ମିଳିବନି । ଚେୟାରମ୍ୟାନ ହେଇଛ... ! ଗରିବଗୁରୁବାଙ୍କ ତଣ୍ଟିଚିପି କୋଠା କରିବ । ସେମାନଙ୍କ ତତଲା ଲୁହରେ ଦିନେ ନା ଦିନେ ତମମାନଙ୍କର ଘର ଭୂଶୁଡ଼ି ପଡ଼ିବ ।

[ବାହାରୁ ଆସିଛି ଚରଣ ଦାସ । ହାତରେ ଗୋଟାଏ ବ୍ୟାଗ ]

ଚରଣ : ଆଲୋ କାହାକୁ ଏତେ ଗାଳି ଦଉଛୁ ?

[ପଡ଼ିଥିବା କେତୋଟି ଜିନିଷ ଉଠାଇଛି ଚରଣ । ବିରକ୍ତ ହୋଇଛି ତା'ଉପରେ ଭାରତୀ ]

ଭାରତୀ : ଥାଉ... ଥାଉ... । ସେ ଦରଦ ଥାଉ । ତମମାନଙ୍କର ସେ ସହାନୁଭୂତି ମୋର ଦରକାର ନାହିଁ ।

ଚରଣ : କେଡ଼େ ସୁନ୍ଦର ଦୋକାନଟା ! ନିମିଷକ ଭିତରେ କ'ଣ ହେଇଗଲା ! ତତେ କେତେ ବୁଝେଇଛି । ଆଲୋ ହାକିମ ହୁକୁମାଙ୍କ କାମ । ସେମାନଙ୍କ ସାଙ୍ଗରେ ବାଦ କରି ତୁ ଜିତିପାରିବୁ ?

ଭାରତୀ : କ'ଣ ପାଇଁ ଆସିଛ ? ଦୋକାନଟା ଭାଙ୍ଗି ଦେଇ ମନ ଶାନ୍ତ ହେଲା ନାହିଁ ?

ଚରଣ : ଆଲୋ ଭାରତୀ, ତୁ ତ ସଦାବେଳେ ମୋ ଉପରେ ଗରଗର ହେଲୁ । ବେଳ ଥାଉଁ ଥାଉଁ ମୁଁ ତୋତେ କହିଛି । ତୁ କ'ଣ ମୋ କଥା ଶୁଣିଲୁ ?

ଭାରତୀ : ଚୋର ଘରେ ସବୁଦିନ ଆଲୁଅ ନଥାଏ । ଦିନେ ନା ଦିନେ ଅନ୍ଧାର ଘୋଟିବ । ସେଦିନ ଜାଣିବ, ଏ ଅନ୍ଧାରଟା କେଡ଼େ କ୍ଷତିକାରକ ! କେଡ଼େ ଭୟଙ୍କର !

ଚରଣ : ଭାରତୀ, ତୁ ତ ଛୋଟିଆ ମଣିଷଟେ ! ଏଡ଼େ ବଡ଼ ବଡ଼ କଥା ତୋ ମୁଣ୍ଡକୁ କେମିତି ଜୁଟୁଛି ?

ଭାରତୀ : ମୁଣ୍ଡ ଥିଲେ ତ ତମେମାନେ ଚିନ୍ତା କରିବ ! ପର ଘର ଭାଙ୍ଗିବା, ପର ଦ୍ରବ୍ୟ ଅପହରଣ କରି କରି ତ ସାରା ଜୀବନଟା କାଟିଦେଲଣି । ଆଉ କ'ଣଟା ବାକି ଅଛି ଯେ ତମେମାନେ ହେଜିବ ?

ଚରଣ : ଆଲୋ ଆମ ଚେୟାରମ୍ୟାନ ବାବୁ ଖରାପଲୋକ ନୁହଁନ୍ତି । ମଦୁଆ ହଉ ପଛେ, ତାଙ୍କର ବି ହୃଦୟ ଅଛି । ତୁ କହୁନୁ, ଦୋକାନ ଭାଙ୍ଗିବା ପୂର୍ବରୁ ତୋତେ ବୁଝେଇ ନାହାନ୍ତି ?

ଭାରତୀ : ଦେଶରେ ଯେତେବେଳେ ଅରାଜକତା ଦେଖାଦିଏ, ସେତେବେଳେ ଏଇଭଳି ଅକାଳକୁଷ୍ମାଣ୍ଡମାନେ ଜନ୍ମ ଗ୍ରହଣ କରନ୍ତି । ଆଉ ତମ ସେ ଚେୟାରମ୍ୟାନ ହଉଛି ସେଥିରୁ ଗୋଟାଏ ଅବତାର ।

ଚରଣ : ତୁ ତ ଏତେ ପାଠଶାଠ ପଢ଼ିନୁ । ଏସବୁ କେମିତି ଜାଣିଲୁ ? ହଁ, ତୋ ତେଲର କରାମତି ହେଇଥିବ !

ଭାରତୀ : ସେ ତେଲର ବି ମହକ ଅଛି । ଆଉ ସେ ମହକ ହେଉଛି ସତ୍ୟ ଧର୍ମ ନ୍ୟାୟର ମହକ ।

ଚରଣ : କାହିଁକି ମାଖୁନା କଥାଗୁଡ଼ାକ ଶୁଣଉଛୁ ? ସତ୍ୟ ଧର୍ମରେ କାହାରି ପେଟ ପୂରିଲାଣି, ନା' ପୂରିବ ?

ଭାରତୀ : ସତ୍ୟ ହେଉଛି ସେହି ଅନିର୍ବାଣ ଦୀପଶିଖା, ଯାହା ପାହାଡ଼ ଉପରେ ରହିଲେ ବି ଶାଶ୍ୱତ ଆଲୋକ ବିକିରଣ କରିଚାଲିବ । ପବନର ବେଗ ତାର ଆଲୋକ ଶିଖାକୁ ତରଙ୍ଗାୟିତ କରିପାରେ, ମାତ୍ର ନିର୍ବାପିତ କରିପାରିବ ନାହିଁ ।

ଚରଣ : କିଲୋ ତୁ ଏଗୁଡ଼ାକ ସବୁ କ'ଣ କହୁଛୁ, ମୋ ମୁଣ୍ଡରେ ଜମା ପଶୁନି ।

ଭାରତୀ : ଘୁଷୁରି ଯଦି ଶୁଦ୍ଧପୂତ ହୋଇ ବିଷ୍ଠା ଭୋଜନ ପରିତ୍ୟାଗ କରେ, ତଥାପି ସେ ଗାଈ ହୋଇପାରିବ ନାହିଁ । ଦୁର୍ନୀତିର ବିଷଟା ତମମାନଙ୍କ ଶିରା

ପ୍ରଶିରାରେ ଏମିତି ପ୍ରସରିଯାଇଛି, ସେଥିରୁ ମୁକ୍ତିପାଇବା ତମମାନଙ୍କ ପକ୍ଷେ କଷ୍ଟକର ।

ଚରଣ : ସେ ବାଜେ କଥା ବନ୍ଦକର । ମୁଁ ଆସିଥିଲି ତୋତେ ବୁଝେଇବା ପାଇଁ । ଚେୟାରମାନ କହିଛନ୍ତି, ଶଗଡ଼ିଆ ପଟିରେ ତୋ ପାଇଁ ଦୋକାନ ଘର କରିଦେବେ । ତୁ ଗୋଟାଏ ଦରଖାସ୍ତ ପକେଇଦେ । କେତେଦିନ ଏମିତି ହୀନସ୍ତା ହଉଥିବୁ !

ଭାରତୀ : ଚାଲିଯା' ଏଠୁ କହୁଛି । ମୁଁ ତମ ଚେୟାରମାନର ପାଦଚଟା କୁକୁର ନୁହେଁ । ଖୋସାମତି କରି ଗୁଚ୍ଛୁରାଣ ମେଣ୍ଟେଇବି ! ଲଜ୍ଜା ଲାଗିଲା ନାହିଁ, ରାତି ଅଧରେ ଗୋଟାଏ ନିଆଶ୍ରୀର ଦୋକାନ ଭାଙ୍ଗୁଥିଲ ! ଯଦି ସତ୍ ସାହସ ଥିଲା, ଦିନରେ ଭାଙ୍ଗି ଦେଖେଇ ଦେଲନି ।

ଚରଣ : ଯାହାତ ହବାର ହେଇଗଲାଣି । ଆଉ ସେ ପଛ କଥା ଭାବି ଲାଭ କ'ଣ ! ନେ ଫର୍ମଟା ନେ । ଦସ୍ତଖତଟା କରିଦେ । କୂଳରେ ତ ଲାଗିଯିବୁ ।

[ଚରଣ ଦାସ ହାତରୁ ଫର୍ମଟା ନେଇଚି ଭାରତୀ । ଚିରି ଟିକ୍ ଟିକ୍ କରି ଫିଙ୍ଗିଦେଇଛି ଚରଣ ଉପରକୁ ]

ଭାରତୀ : ଭାବିଥିଲ, ଦୋକାନଟା ଭାଙ୍ଗିଦେଲେ ମୁଁ ଆଉ ଉଠି ପାରିବିନି । ଏ ଗରିବଲୋକଗୁଡ଼ାକ ଦୁଇଓଳା ପେଟପୂରା ଖାଇବାକୁ ନ ପାଇଲେ ବି ମରିଯାଆନ୍ତି ନାହିଁ । ଅର୍ଦ୍ଧାହାର ଆଉ ଅନାହାର ଭିତରୁ ସେମାନେ ବଞ୍ଚିବା ପାଇଁ ଶକ୍ତି ସଂଗ୍ରହ କରିଥାନ୍ତି ।

ଚରଣ : ଯାହା କଲୁ, କିଛି ଭଲ କଲୁନି ।

ଭାରତୀ : ମତେ ବୁଝେଇବା ଦରକାର ନାହିଁ । ଚାଲିଯା କହୁଛି । ନଇଲେ ଏଇ ପନିକିରେ ଶେଷ କରିଦେବି ।

[ପନିକା ଧରି ଗୋଡ଼େଇଛି ଭାରତୀ । ପ୍ରାଣ ବିକଳରେ ପଳାଇଯାଇଛି ଚରଣଦାସ ।]

(ମଞ୍ଚ ଅନ୍ଧକାର ହୋଇଛି)



## ଦ୍ୱାଦଶ ଦୃଶ୍ୟ

ସ୍ଥାନ — ସହରର ସେହି ଥାନା

ସମୟ — ରାତି

ଚରିତ୍ର — ପରମଗୁରୁ, ନିତାଇରାମ, ଗାଲମାଧବ

[ପୂର୍ବର ସେହି ପରିଚିତ ଥାନା । ରାତି ପ୍ରାୟ ବାରଟା ପାଖାପାଖି ହେବ । ଗାଲମାଧବ ପାଇଁ ଅପେକ୍ଷା କରିଛନ୍ତି ବୃଦ୍ଧ ନିତାଇରାମ୍ । ଗୋଟାଏ କିଛି ଅତି ଜରୁରୀ ଆଲୋଚନା ପାଇଁ ସେ ତତ୍ପର । ମାତ୍ର ଗାଲମାଧବ ଆସୁନଥିବାରୁ ଖୁବ୍ ବିରକ୍ତ ବୃଦ୍ଧ...]

ବୃଦ୍ଧ : ତମେ ଖବର ପଠେଇଥିଲ ?

ପରମଗୁରୁ : ହଁ, ମଉସା ।

ବୃଦ୍ଧ : ତାହେଲେ ? ଆସିବ, ପୁଣି ଏତେ ଡେରିରେ !

ପରମଗୁରୁ : ଡେରିରେ ଆସିବାଟା ଗାଲମାଧବଙ୍କର ତ ଗୋଟାଏ ନିତିଦିନିଆ ଅଭ୍ୟାସ ।

ବୃଦ୍ଧ : ଅଭ୍ୟାସ ନୁହେଁ, ବରଂ ବଦଭ୍ୟାସ କହିଲେ ଠିକ୍ ହେବ । ନେତା... ମନ୍ତ୍ରୀ ହୋଇ ଯଦି ଶୃଙ୍ଖଳା... ସମୟାନୁବର୍ତ୍ତିତା ନ ଶିଖିବ, ଆଉ ଜନସାଧାରଣଙ୍କୁ କ'ଣ କହିବ ? ସେମାନଙ୍କୁ କ'ଣ ଶିଖେଇବ ?

ପରମଗୁରୁ : ଗାଲମାଧବ ଗୋଟାଏ ଭିନ୍ନ ଉପାଦାନରେ ଗଢ଼ା । ରାଜନୀତି ତା'ପାଇଁ ଗୋଟାଏ ଖେଳ ।

ବୃଦ୍ଧ : କେତେ କଷ୍ଟରେ ଆମେ ଏ ଦେଶ ପାଇଁ ସ୍ୱାଧୀନତା ଆଣିଥିଲୁ । ବ୍ରିଟିଶ୍‌ର ସେ ନିର୍ମମ ଅତ୍ୟାଚାର କଥା ମନେ ପଡ଼ିଲେ ଲୋମମୂଳ ଟାଙ୍କୁରି ଉଠେ । ଏତେ କଷ୍ଟ ସହି ଯେଉଁ ସ୍ୱାଧୀନତା ଆଣିଥିଲୁ, ତାକୁ ପାସୋରି ପକେଇଲ, ଗାଲମାଧବ । ବାପୁ ଥିଲେ ଆଜି, ତାଙ୍କୁ ମୁହଁ ଦେଖାଇ ପାରିଥାନ୍ତ ?

ପରମଗୁରୁ : ଅନ୍ୟକୁ ଲୁଟିବା ଯାହାର ଅଭ୍ୟାସ, ଦେଶର ସ୍ୱାର୍ଥକୁ ବଳି ଦେଇ ନିଜର ଉଦର ଭରିବା ଯାହାର ସ୍ୱଭାବ, ତା'ଠୁଁ ଆଉ ଅଧିକ କ'ଣ ଆଶା କରାଯାଇପାରେ ?

ବୃଦ୍ଧ : ବାପୁର କଳ୍ପିତ ରାମରାଜ୍ୟକୁ ଏମାନେ ଉଧେଇବାକୁ ଦେଲେ ନାହିଁ । ବାପୁର ସ୍ୱପ୍ନ ଅଧା ରହିଗଲା । କଷ୍ଟଲବ୍ଧ ସ୍ୱାଧୀନତାକୁ ସାଇତି ରଖି ପାରିଲେ ନାହିଁ ।

ପରମଗୁରୁ : ଦେଶବାସୀ କ'ଣ ପାଇଲେ ? ସତ କହିବାକୁ ଗଲେ, ଦେଶ ସ୍ୱାଧୀନ ହେଲା । ହେଲେ ଦେଶବାସୀ ? ସେମାନେ ଯେଉଁ ଅପନ୍ତରାକୁ ସେହି ଅପନ୍ତରାରେ ।

**[ବୃଦ୍ଧଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଆସୁଥିଲା ]**

ବୃଦ୍ଧ : ଆଜି ଦେଶବାସୀ ପାଳନ କରୁଛନ୍ତି ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ । ପଚାଶତମ ସ୍ୱାଧୀନତାର ସ୍ମାରକୀ । ହେ କୃତଘ୍ନ ନେତା... ମନ୍ତ୍ରୀ... ଶାସକଦଳ ! ଯିଏ ରକତ ପାଣି କରି ତମମାନଙ୍କ ପାଇଁ ସ୍ୱାଧୀନତା ଆଣିଲା, ତମେମାନେ ତାକୁ ହିଁ ଭୁଲିଗଲ ? ସେହି ବାପୁର ଆଦର୍ଶକୁ ପାସୋରିଗଲ ?

ପରମଗୁରୁ : ଏଠି ସବୁ ଅସମ୍ଭବ ପୁଣି ସମ୍ଭବ । ଯେଉଁଠି ସ୍ୱାର୍ଥର ନାମରେ ଦିବାରାତ୍ରି ଦିହୁଡ଼ି ଜଳେ, ଯେଉଁଠି ଟାଉଟର ଡକାୟତ ଦେଶଭକ୍ତ ନେତା, ସେଠି ସ୍ୱାଧୀନତାର ମହକକୁ ସାଇତି ରଖିବ କିଏ ? ତାର ମୂଲ୍ୟକୁ ବୁଝିବ କିଏ ?

**[ବୃଦ୍ଧ ଭିତରେ ଦେଖାଦେଇଛି ଭାବାନ୍ତର । ମୁଖ ମଣ୍ଡଳରେ ଅସ୍ୱାଭାବିକତାର ଛାପ ]**

ନିତାଇରାମ : ହୁଁ (ଦୀର୍ଘଶ୍ୱାସ)... ! ପଚାଶ ବର୍ଷ ଭିତରେ ସବୁକିଛି ଓଲଟପାଲଟ ହୋଇଯାଇଛି । କି ସ୍ୱପ୍ନ ଦେଖୁଥିଲେ ବାପୁଜୀ... କ'ଣ ମିଳିଲା ତାଙ୍କୁ... ?

ପରମଗୁରୁ : କହିବ କାହାକୁ ? ଶୁଣିବ କିଏ ? ରକ୍ଷକ ଯେତେବେଳେ ଭକ୍ଷକ ହେବ, ଦେଶକୁ କାଳ ଘୋଟିଲା ବୋଲି ଧରି ନେବାକୁ ହେବ ।

ନିତାଇରାମ : ଗାଲମାଧବ ଏ ଯାଏ ଆସିଲା ନାହିଁ । ଖବର ଦେଇଥିଲ ତ ? ନିଜେ ଦେଇଥିଲ, ନା' ଆଉ କାହା ହାତରେ ଖବର ପଠାଇଥିଲ ?

ପରମଗୁରୁ : ମାଲପାଣି ଖବର ନେଇ ଯାଇଥିଲା । ସେ ନିଶ୍ଚୟ ଦେଇଥିବ ? ତାପରେ ବିଳମ୍ବିତ ରାତିରେ ବେପାର କରିବା ଗାଲମାଧବର ଗୋଟାଏ ନିତିଦିନିଆ ଅଭ୍ୟାସ ।

[ମଟର ହର୍ଣ୍ଣ ଶୁଭିଛି । ସଚେତନ ହୋଇ ଉଠିଛନ୍ତି ଉଭୟ ]

ନିତାଇରାମ : ଆସିଗଲା ବୋଧେ !

ପରମଗୁରୁ : ହଁ ।

[ଭିତରକୁ ଆସିଛି ଗାଲମାଧବ । ନମସ୍କାର ଜଣାଇ ଚାଲିଯାଇଚି ପରମଗୁରୁ ]

ଗାଲମାଧବ : ମତେ ଡକେଇ ପଠେଇଥିଲେ ?

ନିତାଇରାମ : ହଁ, ତମ ସହିତ ଗୋଟାଏ ଜରୁରୀ କଥାବାର୍ତ୍ତା ଅଛି । ବସ ।

ଗାଲମାଧବ : କୁହନ୍ତୁ ।

ନିତାଇରାମ : ଦୁଇଟା କାମ ପାଇଁ ମୁଁ ଖବର ଦେଇଥିଲି ।

ଗାଲମାଧବ : ନିଃସଂକୋଚରେ କୁହନ୍ତୁ ।

ନିତାଇରାମ : ଖବରକାଗଜରୁ ଦେଖିଲି, ତମେ ନିଶାର ପୁଣି ପ୍ରଚଳନ କରାଉଛ ? ଏହା କ'ଣ ସତ ? ଜଣେ ସଂଗଠକର ସନ୍ତାନ ହୋଇ ତମେ...

ଗାଲମାଧବ : ଯୁଗ ବଦଳିଯାଇଛି । ୫୦ ବର୍ଷ ଭିତରେ ଆମେ ପଚାଶ ହାତ ଉପରକୁ ଉଠି ଆସିଛୁ । ଏ ଯୁଗ ହେଉଛି କମ୍ପ୍ୟୁଟରର ଯୁଗ । ଅରଟକୁ ଧରି ବସିଲେ ଆମେ ପଛରେ ପଡ଼ିଯିବା । ବହୁତ ପଛରେ ।

ନିତାଇରାମ : ପ୍ରଗତି କରିବ ବୋଲି କ'ଣ ନିଜ ବାପ ମା'ଙ୍କୁ ଭୁଲିଯିବ ? ଗାନ୍ଧି ଚାଲି ଯାଇଛନ୍ତି, ଭଲ ହୋଇଛି । ସେ ବଞ୍ଚିଥିଲେ, କେତେ ବାଧିଥାନ୍ତା ତାଙ୍କୁ !

ଗାଲମାଧବ : ଆମକୁ ବିଶ୍ୱର ସଭ୍ୟତା ସହିତ ତାଳ ଦେଇ ଆଗେଇବାକୁ ପଡ଼ିବ । ବିଜ୍ଞାନକୁ ନ ଧରିଲେ ଆମେ ହାରିଯିବୁ ।

ନିତାଇରାମ : ନିଶା ନିବାରଣ ପାଇଁ ଆମେ ଜୀବନ ଢାଳି ଦେଇଛୁ । ମଦ ଦୋକାନ ଆଗରେ ପିକେଟିଙ୍ଗ୍ କରିଛୁ । କେତେ ଲାଠିମାଡ଼ ଖାଇଛୁ । ଗାନ୍ଧିଙ୍କର ସ୍ୱପ୍ନ ଥିଲା, ଏକ ନିଶାମୁକ୍ତ ଭାରତ ଗଠନ କରିବେ । ହେଲେ ତମେମାନେ ତାଙ୍କ ସ୍ୱପ୍ନକୁ ଧୂଳିସାତ କରିଦେଲ ।

ଗାଲମାଧବ : ସମୟ ବଦଳିଯାଇଛି । ପାଦେ ଆଗେଇବାକୁ ହେଲେ ଟଙ୍କା ଦରକାର । ଏ ଦେଶର ଆୟର ଶତକଡ଼ା ୯୫ଭାଗ କର୍ମଚାରୀ, ଅଫିସରମାନଙ୍କର ଦରମାରେ ଚାଲିଯାଏ । ବାକି ପାଞ୍ଚ ଭାଗରେ କି ଉନ୍ନତି ହେବ ?

ନିତାଇରାମ : ତା' ବୋଲି ପୂଜ୍ୟପୂଜାର ବ୍ୟତିକ୍ରମ କରିବ ? ବାପର ମଥା ଉପରେ ପାଦ ଥାପି ଆଗେଇବ ?

ଗାଲମାଧବ : ଦେଶକୁ ଆଗେଇନେବାର ଏକମାତ୍ର ବାଟ ଅବକାରୀ ପଦାର୍ଥର ପ୍ରସାର । ଉନ୍ନତି ପାଇଁ ଅର୍ଥ ଦରକାର । ଆଉ ସେ ଅର୍ଥ ଯୋଗାଇବ କେବଳ ଅବକାରୀ ପଦାର୍ଥ । ଆପଣ କ'ଣ ଚାହାନ୍ତିନି, ଏ ଦେଶ ଆଗଉ ?

ନିତାଇରାମ : ତମେ କେମିତି ଜାଣିବ, ମୋ ଦେଶକୁ ମୁଁ କେତେ ଭଲପାଏ । ତା' ଦୁଃଖ ସୁଖ ସହିତ କେତେ ରାତି କେମିତି କଟିଛି !

ଗାଲମାଧବ : ଅହିଂସା ଦେଶକୁ ସ୍ୱାଧୀନ କରିପାରେ, ହେଲେ ଅହିଂସା ବଳରେ ଦେଶକୁ ଶାସନ କରାଯାଇପାରେନା । ଏ ଯୁଗ ହେଉଛି ଆଧୁନିକ ଯୁଗ... ପରମାଣୁର ଯୁଗ । ଏଠି ଅହିଂସାର ସଂସ୍କାର ଲୋଡ଼ା ।

ନିତାଇରାମ : ତମେମାନେ ଏ ଦେଶପ୍ରତି... ଗାନ୍ଧିପ୍ରତି ଅନ୍ୟାୟ କରୁଛ ! ଶେଷରେ ମଦଦୋକାନଟାଏ, ବାପୁଙ୍କ ମୂର୍ତ୍ତି ସାମନାରେ କରିବାକୁ ଅନୁମତି ଦେଲ ? ବାଃ... ବାଃରେ ଉତ୍ତର ଦାୟାଦ । ସ୍ୱର୍ଗରେ ଥାଇ ବାପୁ ତମମାନଙ୍କୁ ଆଶିଷ ଢାଳିବେ । ଛି... ଛି... !!

ଗାଲମାଧବ : ଆପଣ ମୋ ସ୍ଥାନରେ ଥିଲେ ଜାଣିପାରିଥାନ୍ତେ ।

ନିତାଇରାମ : ଏ ବୁଢ଼ାଟାର ଅନୁରୋଧ, ମଦ ଦୋକାନଟା ଉଠେଇ ନିଅ । ନଚେତ୍ ସେ ଛକରୁ ବାପୁର ପ୍ରତିମୂର୍ତ୍ତିଟାକୁ ଅନ୍ୟ ଜାଗାକୁ ନେଇଯାଅ ।

ଗାଲମାଧବ : ଆପଣଙ୍କ କଥା ମୁଁ ନିଶ୍ଚୟ ରଖିବି । ଗାନ୍ଧିଙ୍କ ପ୍ରତିମୂର୍ତ୍ତି ଭଲଜାଗାରେ ସ୍ଥାପିତ ହେବ ।

ନିତାଇରାମ : କ'ଣ କହିଲ ?

ଗାଲମାଧବ : ହଁ, ଆଉ କ'ଣ କହିବେ ?

ନିତାଇରାମ : ଯେଉଁ ପିଲାଟିକୁ ତମ ଲୋକମାନେ ବଡ଼ ଚତୁରତାର ସହିତ ଆରେଷ୍ଟ କରାଇଲେ, ତାର ଦୋଷ କ'ଣ ଥିଲା ? ସେ କ'ଣ ପ୍ରକୃତରେ ଟେକା ମାରିଥିଲା ?

ଗାଲମାଧବ : ପୋଲିସ ରିପୋର୍ଟ କହୁଛି, ସେ ମାରିଛି ।

ନିତାଇରାମ : ତମେ କ'ଣ ଚାହ, ସେ ନିରୀହ ପିଲାଟି ଦଣ୍ଡ ପାଉ ? ସେ ଟେକା ଫିଙ୍ଗିଛି ବୋଲି ତମର ହୃଦ୍‌ବୋଧ ହେଉଛି ?

ଗାଲମାଧବ : ନା'... ମୋର ବିଶ୍ୱାସ ହଉନି ।

ନିତାଇରାମ : ତେବେ ତାକୁ ଜେଲ୍‌ରେ ପୂରେଇଛ କାହିଁକି ?

ଗାଲମାଧବ : ଠିକ୍ ଅଛି । ମୁଁ ତାକୁ ଛାଡ଼ିଦେବି ।

ନିତାଇରାମ : ଏବେ ବି ସମୟ ଅଛି । କିଛି ଭଲ କାମ କରିବାକୁ ଚେଷ୍ଟାକର ବାବା । ପିତୃପୁରୁଷଙ୍କ ନାଁ ରଖ ।

ଗାଲମାଧବ : ଦେଖନ୍ତୁ, କିଛି ଜରୁରୀ କାମ ଥିଲେ, ମତେ ଡକାଇବେ । ସମୟଟା ମୋ ପାଇଁ ଭାରି ମୂଲ୍ୟବାନ୍ ।

ନିତାଇରାମ : ଏ ସବୁ କ'ଣ ଜରୁରୀ ନୁହେଁ ?

ଗାଲମାଧବ : ଜଣେ ବରିଷ୍ଠ ନେତାକୁ ଡାକି ଆଈମା' କାହାଣୀ କହିବାଟା କ'ଣ ନିହାତି ଜରୁରୀ ?

ନିତାଇରାମ : କ'ଣ ହେଲା ? ମୁଁ ଯାହା ସବୁ କହିଗଲି, ସେ ସବୁ ଆଈମା' କାହାଣୀ ? ତମେ ଏ କଥା କହିପାରିଲ ?

ଗାଲମାଧବ : ଆସୁଛି । ଅନେକ ରାତି ହେଲାଣି । ହଁ, ଗଲାବେଳେ ଗୋଟିଏ କଥା କହିଦେବାକୁ ଉଚିତ ମନେକରୁଚି । ଆପଣ ଏଣିକି ନୀରବତା ଅବଲମ୍ବନ କରନ୍ତୁ । Good night.

ନିତାଇରାମ : ଗାଲମାଧବ, ମୋ କଥା ବି ଶୁଣିଯାଅ । ପ୍ରଥମେ ମଣିଷ ହେବାକୁ ଚେଷ୍ଟାକର । ତା'ପରେ ଦେଶ ଶାସନ କରିବ । ଏ ଦେଶ ଆଜି ଭଲ ମଣିଷଟିଏ ଖୋଜୁଛି । ଲଙ୍ଗଳା ଫୁଙ୍ଗୁଳା ହଉ ପଛେ, ନିରୋଳା ମଣିଷ... ସଚ୍ଚୋଟ ମଣିଷ... ସାଧା ମଣିଷ... ।

[ବେଖାତିର ଭାବେ ଚାଲିଯାଇଛି ଗାଲମାଧବ । ଉପଦେଶ ଦେଇ ଚାଲିଛନ୍ତି ନିତାଇରାମ୍ ]

(ମଞ୍ଚ ଅନ୍ଧକାର ହୋଇଛି)

❑ ❑ ❑

## ତ୍ରୟୋଦଶ ଦୃଶ୍ୟ

ସ୍ଥାନ — ସହରର ସେହି ଛକ

ସମୟ — ରାତି ଅଧିକ

ଚରିତ୍ର — ବୃଦ୍ଧ ନିତାଇରାମ, ଭାରତୀ

[ସହରର ସେହି ପୁରୁଣା ଛକ । ଯା'ଭିତରେ ଅନେକ କିଛି ପରିବର୍ତ୍ତନ ଘଟିଯାଇଛି । ଛକ ଉପରୁ ବାପୁଜୀଙ୍କ ପ୍ରତିମୂର୍ତ୍ତିଟି ଉଭାନ ହୋଇଯାଇଛି । କେବଳ ପଡ଼ିରହିଛି ସିମେଣ୍ଟ ତିଆରି ଭିତ୍ତିଭୂମି ବା ଫାଉଣ୍ଡେସନ ବେସ୍‌ଟି । ଏହି ସିମେଣ୍ଟ ବେସ୍‌କୁ ଭରା ଦେଇ କାନ୍ଦୁଛି ଭାରତୀ । ବିଧବା କଣ୍ଠର ବିଳାପ ରାତ୍ରିର ଭୟାବହତାକୁ ବିଦ୍ରୂପ କରୁଛି । ଧୀରେ ଧୀରେ ଆସିଛନ୍ତି ବୃଦ୍ଧ ନିତାଇରାମ୍ । ବେସ୍‌କୁ ଚାହିଁଛନ୍ତି । ମୂର୍ତ୍ତି ନ ଦେଖି ବିକଳ ହୋଇ ଉଠିଛନ୍ତି । ଭାରତୀ ପାଖକୁ ଯାଇଛନ୍ତି । ତାର କେଶକୁ ଆଉଁଶି ଦେଇଛନ୍ତି ସ୍ନେହରେ... ]

ବୃଦ୍ଧ : କିଏ ? କିଏ ମା' ? ଏତେ ରାତିରେ କାହିଁକି କାନ୍ଦୁଛ ? କ'ଣ ହେଇଛି ତମର ? ହେଲେ... ହେଲେ ମୋ ବାପୁ କାହିଁ ? କ'ଣ କଲ ତାକୁ ?

[ମଥା ଟେକି ଚାହିଁଛି ଭାରତୀ । ବୃଦ୍ଧଙ୍କୁ ଦେଖି କଇଁ କଇଁ ହୋଇ କାନ୍ଦି ଉଠିଛି ]

ଭାରତୀ : 'ବାବା'... !

[ହଠାତ୍ ଯେମିତି କୂଳର ସନ୍ଧାନ ପାଇଯାଇଛି ନାଉରୀ-ବିହୀନ ନାଆଟି । ଭାରତୀ କୋହ ସମ୍ଭରଣ କରିପାରିନି । ଲୋଟି ପଡ଼ିଛି ବୃଦ୍ଧଙ୍କ ପାଦତଳେ । ସ୍ନେହରେ ଆଉଁଶି ଦେଇଛନ୍ତି ବୃଦ୍ଧ ନିତାଇରାମ୍ ]

ବୃଦ୍ଧ : ସେମାନେ ମୋ ବିଶ୍ୱାସର ବନ୍ଧଟାକୁ ଭାଙ୍ଗିଦେଲେ । ମୁଁ ଜାଣି ନଥିଲି, ମୋ ସ୍ୱପ୍ନର ଭାରତ ଏତେଶୀଘ୍ର ଛାରଖାର ହୋଇଯିବ ବୋଲି ।

[ବୃଦ୍ଧଙ୍କ କଣ୍ଠ ଥରି ଉଠୁଥିଲା ]

ଭାରତୀ : ବାବା, ସେମାନେ ବାପୁଙ୍କ ମୂର୍ତ୍ତିକୁ ଫିଙ୍ଗି ଦେଇଛନ୍ତି । ଏଇ ରାଜରାସ୍ତା ଦେଇ ପ୍ରତିଦିନ କେତେ ରସିକ ପଣ୍ଡିତ ରାଜନୈତିକ ନେତା ଯିବାଆସିବା କରୁଛନ୍ତି । କେହି ଜଣେ ବି ପ୍ରତିବାଦ କଲେନି ।

ବୃଦ୍ଧ : ଅତ୍ୟାଚାର ସହି ସହି ସେମାନେ ଅଭ୍ୟସ୍ତ ହୋଇଗଲେଣି । ଦୁର୍ନୀତି ଲାଞ୍ଚ ମିଛ ଯେତେବେଳେ ପ୍ରଗତିର ଇସ୍ତାହାର, ସେତେବେଳେ ମାତୃଭୂମି ପ୍ରତି ସେମାନଙ୍କର ମମତା ଆସିବ କେଉଁଠୁ ?

ଭାରତୀ : ପ୍ରତି ମୁହୂର୍ତ୍ତରେ ଏଠି ବିବେକ ବଳିପଡୁଛି । ସତ୍ୟକୁ ସମାଧି ଦିଆଯାଉଛି । ଅହିଂସା ଆତ୍ମହତ୍ୟା କରୁଛି । ନ୍ୟାୟର ନଥିପତ୍ର ନଷ୍ଟ କରାଯାଉଛି । ସେଠି ମମତାର ମୂଲ ମୂଲ୍ୟହୀନ ।

ବୃଦ୍ଧ : ସମସ୍ତେ ଯେତେବେଳେ ସ୍ୱାର୍ଥଯଜ୍ଞର ସାରଥି, କ୍ଷମତା ଯେଉଁଠି ଜୀବନର ମାପକାଠି, ଲୁଣ୍ଠନ ଯେଉଁଠି ଶାସନ ନୀତି, ପରଶ୍ରୀକାତରତା ଯେଉଁଠି ଉନ୍ନତିର ଆହ୍ୱାନ, ସେଠି ବିଶ୍ୱାସର ବାଲିବନ୍ଧ ଭୁଶୁଡ଼ି ପଡ଼ିବନି ତ ଆଉ କ'ଣ ହେବ ?

ଭାରତୀ : ବାବା, ନିପୀଡ଼ିତ ଜନତାର କାତର ଆହ୍ୱାନ କ'ଣ ସେମାନଙ୍କ ଲୁହାର ଛାତି ପାଖରେ ବାରମ୍ବାର ଏମିତି ଧକ୍କା ଖାଇ ଫେରୁଥିବ ?

ବୃଦ୍ଧ : ଯେତେଦିନଯାଏ ଜନତାର ନିଦ ନ ଭାଙ୍ଗିଛି, ଯେତେଦିନଯାଏ ଜନଗଣ ଆତ୍ମସଚେତନ ନ ହୋଇଛନ୍ତି, ସେତେଦିନ ପର୍ଯ୍ୟନ୍ତ ଏ ଅରାଜକତା ଲାଗି ରହିଥିବ ।

ଭାରତୀ : ଏ ଅନ୍ୟାୟର କ'ଣ କିଛି ପ୍ରତିକାର ନାହିଁ ?

ବୃଦ୍ଧ : ଅଛି ।

ଭାରତୀ : କ'ଣ ?

ବୃଦ୍ଧ : ବିଦ୍ରୋହ । ଗଣ ବିଦ୍ରୋହ । ଏ ଦେଶକୁ ଦୁର୍ନୀତି ରାକ୍ଷସ କବଳରୁ ମୁକ୍ତ କରିବାକୁ ହେଲେ ବିପ୍ଳବ ଦରକାର । ଆଉ ସେ ବିପ୍ଳବ ହେଉଛି ସମ୍ପୂର୍ଣ୍ଣ ବିପ୍ଳବ । ଗୋଟାଏ ଟୋଟାଲ ରିଭୋଲ୍ୟୁସନ ଦରକାର ।

ଭାରତୀ : ହଁ (ଦୀର୍ଘଶ୍ୱାସ) ! ଯେଉଁଦିନ ତଳସ୍ତରର ଲୋକମାନେ ଜାଗି ଉଠିବେ, ସେଦିନ ମହିଷାସୁରର ପତନ ଅନିବାର୍ଯ୍ୟ ହୋଇପଡ଼ିବ ।

ବୃଦ୍ଧ : ହଁ, ମା ! ଏ ଦେଶକୁ ମହିଷା କବଳରୁ ମୁକ୍ତ କରିବାକୁ ହେଲେ, ତୋତେ ମା' ଦୁର୍ଗାର ଅବତାର ଗ୍ରହଣ କରିବାକୁ ପଡ଼ିବ । ଯେତେସବୁ ଅନାହାରୀ ଅର୍ଦ୍ଧାହାରୀ କଙ୍କାଳ ପଡ଼ିରହିଛନ୍ତି, ସେମାନେ ତୋ ସହିତ ସ୍ୱର ମିଳାଇବେ । ଆମର ବିଜୟ ସୁନିଶ୍ଚିତ ମା' । ଭୋକିଲା ପେଟର କୋହ ଆଉ ତା' ତତଲା ଚକ୍ଷୁର ଲୁହ କେବେ ବ୍ୟର୍ଥ ହୋଇନି କି ହେବ ନାହିଁ ।

ଭାରତୀ : ତାହେଲେ ମୋ ରାମୁ କାହିଁକି ସେ ଅନ୍ଧାରି ମୁଲକରେ ସଢୁଛି ? ସେ କ'ଣ ମୁକ୍ତ ହେବନି ?

ବୃଦ୍ଧ : ସେ ତ ରାମଚନ୍ଦ୍ର । ତାର କିଏ କ'ଣ କରିବ ?

ଭାରତୀ : ଚକ୍ରାନ୍ତ କରି ତାକୁ ଜେଲ୍ ପଠାଇଛନ୍ତି । ତାର କିଛି ଦୋଷ ନାହିଁ । ମୋ ରାମୁ ସେମିତି ନୁହେଁ ।

ବୃଦ୍ଧ : ମୁଁ ସବୁ କଥା ଜାଣେ ମା' । ତୁ ବ୍ୟସ୍ତ ହ'ନି । କାଲି ସକାଳେ ତୋ ରାମୁ ମୁକ୍ତ ହବ । କେତେଦିନ ଗୋଟାଏ ଜ୍ୱଳନ୍ତ ଅଗ୍ନିପିଣ୍ଡକୁ ସେମାନେ ଅନ୍ଧକାର ଭିତରେ ଆବଦ୍ଧ କରି ରଖିବେ ? ଆଗ୍ନେୟଗିରିର ଲେଲିହାନରେ ସେମାନେ ଜଳିପୋଡ଼ି ଭସ୍ମ ହୋଇଯିବେ ।

ଭାରତୀ : ସତ କହୁଛ, ବାବା ? ମୋ ରାମୁ ମୁକ୍ତ ହବ ?

ବୃଦ୍ଧ : ଉଦୟ ସୂର୍ଯ୍ୟର ଲୋହିତ ଅରୁଣିମାକୁ କେହି କ'ଣ କେବେ ଆଚ୍ଛାଦିତ କରିପାରେ ? ପବନର ଗତିକୁ କେହି କ'ଣ ରୋଧିପାରେ ? ଯାହା ଭବିତବ୍ୟ, ତାହା ନିଶ୍ଚୟ ଘଟିବ ।

ଭାରତୀ : ସେମାନେ ଜେଲ୍‌ରେ ରାମୁକୁ ବହୁତ ପିଟିଛନ୍ତି ।

ବୃଦ୍ଧ : ଯୁଗେ ଯୁଗେ ମହାପୁରୁଷଗଣ ବହୁଭାବେ ଲାଞ୍ଛିତ ଅତ୍ୟାଚାରିତ ହୋଇଛନ୍ତି । ମୋହନ ଦାସ କରମଚାନ୍ଦ ଗାନ୍ଧି କି ଭୁଲ୍ କରିଥିଲେ ଏ ଭାରତବାସୀଙ୍କ ନିକଟରେ ? କ'ଣ ପାଇଁ ସକ୍ରେଟିସ ବିଷପାନ କରିଥିଲେ ? କାହିଁକି ଯୀଶୁଖ୍ରୀଷ୍ଟ କ୍ରୁଶବିଦ୍ଧ ହୋଇଥିଲେ ? ସେମାନଙ୍କର

ଭୁଲ ହେଲା, ସମୂହର କଲ୍ୟାଣ ସାଧନା ସର୍ବିଙ୍କର ମଙ୍ଗଳ କାମନା । ନିଜ ପାଇଁ ଏମାନେ କିଛି କରି ନଥିଲେ । 'ଜଣ' ଅପେକ୍ଷା 'ଗଣ' ଉପରେ ସେମାନେ ଅଧିକ ଗୁରୁତ୍ୱ ଦେଇଥିଲେ ।

ଭାରତୀ : ହଁ, ବାବା । ସେଇଥିପାଇଁ ସେମାନଙ୍କୁ ମୃତ୍ୟୁଦଣ୍ଡ ପୁରସ୍କାର ମିଳିଥିଲା । ହସି ହସି ସେମାନେ ଜୀବନ ଉତ୍ସର୍ଗ କରିଥିଲେ ଏଇ ଜାତିପାଇଁ... ଏଇ ଦେଶପାଇଁ ।

ବୃଦ୍ଧ : ମା' ତୁ ମନଦୁଃଖ କରନି । ଭାଙ୍ଗିପଡ଼ନି । ରାମୁ ହିଁ ହେବ ଆମ ମୁକ୍ତି ସଂଗ୍ରାମର ପ୍ରଧାନ ସେନାପତି । ଏ ଦେଶକୁ ଆମେ ଧ୍ୱଂସ ହେବାକୁ ଦେବାନି' ମା । ଆମକୁ ଲଢ଼ିବାକୁ ପଡ଼ିବ ।

ଭାରତୀ : କାହା ବିରୁଦ୍ଧରେ ଲଢ଼ିବେ ? କ୍ଷମତା, ଅର୍ଥ, ବଳ—ସବୁ ସେମାନଙ୍କ ପାଖରେ ଅଛି ।

ବୃଦ୍ଧ : ଆମ ପାଖେ ଅଛି 'ଅହିଂସା' । ବାପୁ ତ ପୁଣି ଶକ୍ତିଶାଳୀ ଇଂରେଜ ସାମ୍ରାଜ୍ୟକୁ ଦୋହଲାଇ ଦେଇପାରିଲେ । ଆମେ ପାରିବାନି କାହିଁକି ?

ଭାରତୀ : ପାଦରେ ଶକ୍ତି ନାହିଁ । ବୁକୁରେ ଉତ୍ତାପ ନାହିଁ । ଅର୍ଦ୍ଧାହାରୀ ମଣିଷ କେତେକାଳ ଅନାହାରରେ ସଂଗ୍ରାମ କରିପାରିବ ?

ବୃଦ୍ଧ : ଯେଉଁଦିନ ସେମାନଙ୍କ ଭିତରେ ଆତ୍ମଚୈତନ୍ୟର ଉଦୟ ହେବ, ସେଦିନ ଆପଣା ଛାଏଁ ଛାଏଁ ଲଙ୍ଗଳା ମଣିଷ ଘୁଙ୍ଗୁଳା ମଣିଷ ଆଗେଇ ଆସିବ ନିଜର ହକ୍ ପାଇଁ... ଜାତିର ହକ୍ ପାଇଁ... ଦେଶର ହକ୍ ପାଇଁ । ଆଉ ରାମୁ ହିଁ ହେବ ଆମ ସଂଗ୍ରାମର ପ୍ରଥମ ସୈନିକ । 'ଇନକିଲାବ୍'...

ଭାରତୀ : 'ଜିନ୍ଦାବାଦ୍' ।

[ଘୋଷଣା ମୁଦ୍ରାରେ ରହିଯାଇଛନ୍ତି ଉଭୟ]

(ମଞ୍ଚ ଅନ୍ଧକାର ହୋଇଛି)



# ଚତୁର୍ଦ୍ଦଶ ଦୃଶ୍ୟ

ସ୍ଥାନ — ସହରର ସେହି ଛକ

ସମୟ — ପାହାନ୍ତା ପ୍ରହର

ଚରିତ୍ର — ସଲିମ୍, ଚରଣ

[ସହରର ସେହି ପୂର୍ବ ପରିଚିତ ଛକ । ଯେଉଁଠି କେବଳ ଫାଉଣ୍ଡେସନ ବେସ୍‌ଟି ପଡ଼ି ରହିଛି । ପ୍ରତିମୂର୍ତ୍ତି ଅନ୍ତର୍ହିତ, ମାତ୍ର ସ୍ଥିତି ଜାହିର । ସିମେଣ୍ଟର ଏହି ବେସ୍‌ଟିକୁ ଭାଙ୍ଗିବାରେ ଲାଗିଛନ୍ତି ଚରଣଦାସ, ସଲିମ୍ । ହାତରେ ସେମାନଙ୍କର ଗଇଁତି, ଶାବଳ, ହାମର ଇତ୍ୟାଦି । ବେସ୍‌ଟିକୁ ଖୋଳି ଖୋଳି ହାଲିଆ ହୋଇପଡ଼ିଛନ୍ତି ଉଭୟ । କିଛି ସମୟ ଥକ୍କା ମାରିଛନ୍ତି... ]

ସଲିମ : କ'ଣ କରିବା ? ଭାଙ୍ଗି ତ ହଉନି ।

ଚରଣ : କୋଉ କଣ୍ଟ୍ରାକ୍ଟର ତିଆରି କରିଛି କେଜାଣି, ଶାବଳ ବଙ୍କା ହୋଇଯାଉଛି ।

ସଲିମ : ଆଉ ଅଳ୍ପ ସମୟ ପରେ ରାତି ପାହିଯିବ ।

ଚରଣ : ହଁ, ଫର୍ଚ୍ଚା ହେଇ ଆସିଲାଣି ।

ସଲିମ : ଲୋକେ ଉଠି ପଡ଼ିଲେ ଆମେ ଧରା ପଡ଼ିଯିବା । ହାତ ଟିକିଏ ଜୋର୍‌ରେ ଚଳା ।

ଚରଣ : ଗାତଟା ହେଇଯାଇଛି । କଡ଼ଟା ଭାଙ୍ଗିଗଲେ କାମ ସରିଯିବ । ସିଏ କ'ଣ ହଉଛି !

[ସିଗାରେଟ୍ ଲଗାଇଛି ସଲିମ୍ ]

ଚରଣ : ଓଃ, ଏତିକିବେଳେ ସିଗାରେଟ୍ ଖାଇବାକୁ ଥିଲା ?

ସଲିମ : ଆଉ ଦେହରେ ବଳ ନାହିଁ । ନ ହଉଛି ଯଦି ଛାଡ଼ିଦେ' । ପଳେଇଯିବା ।

ଚରଣ : ବଗୁଲି ଦାସେ ଆମକୁ ଛାଡ଼ିଦବ ? ଟଙ୍କା ଦେଇଛିଟି ।

ସଲିମ : କାଲି ସାରିଦବା ।

ଚରଣ : ବଡ଼ ଗାତଟା ହେଇଗଲାଣି ।

ସଲିମ : ହାତ ପୂରା । ଦେଖିଲୁ, କିଛି ଯଦି ମିଳିଗଲା ।

**[ବେସ୍‌ର ଗାତରେ ହାତ ପୂରାଇଛି ଚରଣ ଦାସ । ଗୋଟାଏ ବାଡ଼ି ବାହାରିଛି ]**

ଚରଣ : ଏଇଟା ବୁଢ଼ାର ବଙ୍କୁଲି ବାଡ଼ି ।

ସଲିମ : ଆରେ ଭଲ ଜିନିଷ କିଛି ରଖିନି ?

**[ଗାତରେ ଅଣ୍ଡାଳିଛି ଚରଣ ଦାସ ]**

ଚରଣ : ଚଷମାଟା ନା' କ'ଣ ! ହଁ ତ ! ଧେତ୍, ଯେତକ ଫାଲତୁ ଜିନିଷ ଯା' ଭିତରେ ।

**[ବିରକ୍ତିରେ ଫିଙ୍ଗିଦେଇଛି ଦୂରକୁ ]**

ସଲିମ : ଭଲଭାବେ ହାତମାରି ଦେଖ୍ । ଶେଷ ଆଡ଼କୁ ବେଳେ ବେଳେ ଭଲ ଜିନିଷ ମିଳିଥାଏ ।

ଚରଣ : ନା, ଆଉ କିଛି ନାହିଁ ।

ସଲିମ : ମତେ ଛାଡ଼ । ମୁଁ ଦେଖୁଛି ।

**[ଗାତରେ ହାତ ପୂରାଇଚି ସଲିମ୍ ]**

ଚରଣ : ମିଳିଲା ?

ସଲିମ : 'ନା' ।

ଚରଣ : ସିଏ ତ ଫକଡ଼ଚାନ୍ଦ । ମେଳାଟାରେ ପଡ଼ିଥିଲା । କୋଉଠୁ ମାଲ୍ ପାଇବ ଯେ ସାଇତି ରଖିବ !

ସଲିମ : ହଁ... ପାଇଛି... ପାଇଛି ।

ଚରଣ : କ'ଣଟା ?

ସଲିମ : କପଡ଼ା ଭଳିଆ ଲାଗୁଛି ।

ଚରଣ : ଦେଖି... ଦେଖି... । ଅନ୍ତତଃ ପରିଶ୍ରମର ମୂଲଟା ମିଳିଯାଉ ।

ସଲିମ : ବାହାର କରୁଛି ରହ ।

[ଗାତରୁ ସଲିମ ବାହାର କରିଛି ପୁଳାଏ ଛିଣ୍ଡା କାଗଜ । ବିରକ୍ତିରେ ଫିଙ୍ଗିଛି ଚରଣ ଦାସ । ପରେ ପରେ ଗୋଟାଏ ବାଡ଼ିରେ ଗୁଡ଼ା ହୋଇଥିବା ଗୋଟାଏ ପତାକା । ତ୍ରିରଙ୍ଗ ପତାକା । ଜାତୀୟ ପତାକା ]

ଚରଣ : ଧେତ୍ ତେରି ! କିଛି ମିଳିଲାନି ।

[ବିରକ୍ତ ହୋଇ ବାଡ଼ି ସହ ପତାକାଟିକୁ ଫିଙ୍ଗି ଦେଇଛି ଦୂରକୁ । ପତାକାଟି ଯାଇ ପଡ଼ିଚି ଦୂରରେ ଛିଡ଼ା ହୋଇଥିବା ରାମୁ ହାତରେ । ସିନ୍ଦୂରା ଫାଟି ଆସିଛି । ଚାରିଆଡ଼ ଫର୍ଚ୍ଚା ]

ସଲିମ : ଚାଲ୍, ପଳେଇବା ।

[ଝାଡ଼ିଝୁଡ଼ି ହୋଇ ଯିବାକୁ ବାହାରିଛନ୍ତି ସଲିମ ଏବଂ ଚରଣ ଦାସ । ଶାବଳ ଗଇଁତି ଧରିବାକୁ ଗଲାବେଳେ ଦୂରରୁ ଭାସିଆସିଛି ସ୍ୱାଧୀନତାର ଶୁଭ ମାଙ୍ଗଳିକ ।]

ସ୍ଲୋଗାନ : 'ବନ୍ଦେ'... !

ଜନତା : 'ମାତରମ୍'... !

ସ୍ଲୋଗାନ : ସ୍ୱାଧୀନ ଭାରତ କି–

ଜନତା : 'ଜୟ'...

[ସ୍ଲୋଗାନ ଧ୍ୱନି ଅନ୍ତରାଳରୁ ଆସିଛି ]

[ରାମୁ ହାତରେ ଜାତୀୟ ପତାକା । ଧୀରେ ଧୀରେ ଉଠି ଯାଇଛି ବେସ୍ ଉପରକୁ । ପବନରେ ପତାକା ଫରଫର ହୋଇ ଉଡୁଛି ]

ସ୍ଲୋଗାନ : ମହାତ୍ମାଗାନ୍ଧି କି –

ଜନତା : 'ଜୟ' ।

[ନିଜର ଅଜାଣତରେ ସଲିମ ଏବଂ ଚରଣ ଦାସର ପାଟିରୁ ଜୟ ଧ୍ୱନି ବାହାରିପଡ଼ିଛି । ଉଭୟ ପତାକାକୁ ସାଲ୍ୟୁଟ୍ କରିଛନ୍ତି । ବୃଦ୍ଧ ଥରି ଥରି ଆସିଛନ୍ତି, ବେସ୍‌କୁ ଭରା ଦେଇ ବସିଛନ୍ତି ]

ସ୍ଲୋଗାନ : 'ବନ୍ଦେ'...

ଜନତା : 'ମାତରମ୍'...

ବୃଦ୍ଧ : 'ମାତରମ୍'

[ବଡ଼ କଷ୍ଟରେ ବୃଦ୍ଧଙ୍କ ପାଟିରୁ 'ମାତରମ୍' ଧ୍ୱନିଟି ବାହାରିଛି । ଟଳି ପଡ଼ିଛନ୍ତି ସେଇଠି । ଆଗେଇ ଆସିଛି ଅନ୍ତରାଳରୁ ସମୟ ]

ସମୟ : ମୁଁ ସେଦିନ ଥିଲି । ଆଜି ବି ଅଛି । ଏବଂ ଭବିଷ୍ୟତରେ ମଧ ରହିବି । ଏବେ ବି ସମୟ ଅଛି । ନିଜକୁ ସଜାଡ଼ି ନିଅ । ଅନ୍ତତଃ ଗୋଟାଏ ନିଶ୍ଚିତ ଧ୍ୱଂସମୁଖରୁ ରକ୍ଷା ପାଇଯିବ । ନୂତନ ସ୍ୱପ୍ନରେ ବିଭୋର ହେବା ପୂର୍ବରୁ ନିଜର ମାଟିକୁ, ମାତୃଭାଷାକୁ ଏବଂ ମା'କୁ ଭୁଲିଯାଅନି । ସମ୍ମାନ ଦେଇ ଶିଖ । ଆଉ ଏକ 'ବାପୁ'ର ନବୀନ ସଂସ୍କରଣ ପାଇଁ ପଥ ମୁକ୍ତକର... ପରିଷ୍କାର କର...

[ଶଙ୍ଖଧ୍ୱନି କରିଛି ସମୟ]

(ମଞ୍ଚ କ୍ରମଶଃ ଅନ୍ଧକାର ହୋଇଆସିଛି)

❑❑❑

# ନାଟକର ମଞ୍ଚ

ପ୍ରତ୍ୟେକ ନାଟକର ଏକ ସ୍ୱତନ୍ତ୍ର ମଞ୍ଚଶୈଳୀ ଥାଏ । ନିର୍ଦ୍ଦେଶକ ନିଜର ଇଚ୍ଛା ଅନୁଯାୟୀ ନାଟକକୁ ଚାହିଁ ମଞ୍ଚରେ ସେଟ୍ ଏବଂ ଟେକ୍‌ନିକ ବ୍ୟବହାର କରିଥାଏ ।

ପ୍ରବୀଣ ନିର୍ଦ୍ଦେଶକ ରାମଚନ୍ଦ୍ର ମହାପାତ୍ର ଏହି ନାଟକ ପାଇଁ ନିମ୍ନମତେ ମଞ୍ଚଶୈଳୀ ବ୍ୟବହାର କରିଥିଲେ ।

ସମଗ୍ର ମଞ୍ଚକୁ ବିଭିନ୍ନ ଜୋନ୍‌ରେ ବିଭକ୍ତ କରାଯାଇଥିଲା । ତଦନୁଯାୟୀ ଆଲୋକ ସମ୍ପାତକୁ ନିୟନ୍ତ୍ରଣ କରାଯାଇଥିଲା ।

ପ୍ରଥମ ଜୋନ : ସହରର କୌଣସି ଏକ ଛକ, ଯେଉଁଠି ଗାନ୍ଧି ମୂର୍ତ୍ତିଟିଏ ରହିଛି । (ଫ୍ରଣ୍ଟଜୋନ୍)

ଦ୍ୱିତୀୟଜୋନ : ଥାନା । ଥାନା ସହିତ ସଂଲଗ୍ନ ହୋଇଛି ହାଜତ । ଅର୍ଥାତ୍ ହାଜତଟି ପଛଭାଗକୁ ରହିଛି ।

ତୃତୀୟଜୋନ : ଭାରତୀର ବରାପିଆଜି ଦୋକାନ ।

ବି: ଦ୍ର:– ଯେ କୌଣସି ନିର୍ଦ୍ଦେଶକ ନିଜ ରୁଚି ଅନୁଯାୟୀ ଏ ନାଟକର ମଞ୍ଚ ପ୍ରସ୍ତୁତ କରିପାରିବେ । ନାଟକର ମାଧୁର୍ଯ୍ୟ ଯେପରି ହାନି ନ ହୁଏ, ସେଥିପ୍ରତି ଦୃଷ୍ଟିଦେବା ଆବଶ୍ୟକ ।

❑❑❑

## କିଛି ମତ : କିଛି ମନ୍ତବ୍ୟ

## ପ୍ରଜାତନ୍ତ୍ର (୨୮-୧୨-୧୯୯୭)

# ନାଟକ 'ବନ୍ଦେମାତରମ୍' ପୁରସ୍କୃତ

ଉଦଳାର ପ୍ରଗତିଶୀଳ ନାଟ୍ୟସଂସ୍ଥା 'ଆମେ କ୍ରାନ୍ତି' ପ୍ରଯୋଜିତ ନାଟକ 'ବନ୍ଦେ ମାତରମ୍' ଅନୁଗୋଳ 'ସଭାଘର'ଠାରେ ମଞ୍ଚସ୍ଥ ହୋଇ ସର୍ବମୋଟ ପାଞ୍ଚୋଟି ପୁରସ୍କାର ହାସଲ କରିଛି । 'ନାଟ୍ୟମ୍' ଅନୁଗୋଳ ଦ୍ୱାରା ଆୟୋଜିତ ପଞ୍ଚମ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଗତ ୧୪ ତାରିଖ ଦିନ ସନ୍ଧ୍ୟାରେ ମଞ୍ଚସ୍ଥ ହୋଇଥିଲା, ସମସାମୟିକ ପୃଷ୍ଠଭୂମି ଉପରେ ଆଧାରିତ ନାଟକ 'ବନ୍ଦେ ମାତରମ୍' । ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ କିପରି ଦେଶରେ ସୁବର୍ଣ୍ଣଜୟନ୍ତୀ ନାମରେ ହରିଲୁଟ ଚାଲିଛି, ତାହାର ଏକ ଜୀବନ୍ତ ପ୍ରତିଚ୍ଛବି ଏହି ନାଟକ । ରାଜନୀତିର ଚକ୍ରବ୍ୟୂହ ଭିତରେ ସ୍ୱାଧୀନତା ଆର୍ତ୍ତଚିତ୍କାର ଛାଡୁଛି । ଯେଉଁମାନଙ୍କ ପାଇଁ ଏ ସ୍ୱାଧୀନତା ଆସିଲା, ସେମାନେ ହେଲେ ସବୁ ପ୍ରକାର ସୁଖସୁବିଧାରୁ ବଞ୍ଚିତ । ସୁବିଧାବାଦୀ ଦଳ ସାଧାରଣ ଜନତାକୁ ଭୁଆଁ ବୁଲେଇ ଶୋଷଣ କଲେ ରାଜକୋଷକୁ । ପ୍ରତିବାଦର ସ୍ୱର ଲିଭିଗଲା । ସ୍ୱାଧୀନତା ଯେଉଁମାନଙ୍କ ନାମରେ ଆସିଲା, ସେମାନେ ହୋଇଗଲେ ମୂକ । ସାମ୍ପ୍ରତିକ ମଣିଷ ପାଇଁ ଏ ନାଟକ ଦେଇଥିଲା ଏକ ବଜ୍ରଦୀପ୍ତ ଆହ୍ୱାନ ।

ନାଟକେଟିକୁ ନିର୍ଦ୍ଦେଶନା ଦେଇଥିଲେ ସ୍ୱନାମଧନ୍ୟ ନିର୍ଦ୍ଦେଶକ ଅଭିନେତା ରାମଚନ୍ଦ୍ର ମହାପାତ୍ର । ନାଟକଟିକୁ ରଚନା କରିଥିଲେ ଡଃ ନାରାୟଣ ସାହୁ । ସଙ୍ଗୀତ ପରିଚାଳନା କରିଥିଲେ ବେଣୁଧର ଜେନା । ବିଭିନ୍ନ ଭୂମିକାରେ ଅଂଶଗ୍ରହଣ କରିଥିଲେ ରତ୍ନାକର ଦାଶ, ପ୍ରଦ୍ୟୁମ୍ନ ଦାସ, କ୍ଷୀରୋଦ ମହାନ୍ତି, ବରଦାକାନ୍ତ ପାତ୍ର, ଲରେନ୍ସ କୁମାର, ପ୍ରଦୀପ ପଣ୍ଡା, ଆଶିଷ ମହାନ୍ତି, ରତିକାନ୍ତ ବେହେରା, ମାନସ କୁମାର ନାଏକ ଏବଂ ଜ୍ୟୋତ୍ସ୍ନାରାମ ଶର୍ମା । ଶ୍ରେଷ୍ଠ ନାଟ୍ୟକାର ଭାବେ ଡଃ ନାରାୟଣ ସାହୁ, ଶ୍ରେଷ୍ଠ ଅଭିନେତା ଭାବେ ରତ୍ନାକର ଦାଶ ପ୍ରଶଂସିତ ଅଭିନେତା (ଜୁରୀ) ପ୍ରଦୀପ ପଣ୍ଡା, ଶ୍ରେଷ୍ଠ ଶୃଙ୍ଖଳିତ ଦଳ ଏବଂ ଦ୍ୱିତୀୟ ଶ୍ରେଷ୍ଠ ପ୍ରଯୋଜନା ଏହିପରି ୫ଟି ପୁରସ୍କାର ନାଟ୍ୟସଂସ୍ଥା 'ଆମେ କ୍ରାନ୍ତି'କୁ ମିଳିଛି । ନାଟକରେ ରତିକାନ୍ତ ବେହେରା, ରତ୍ନାକର ଦାଶ ଏବଂ ଶିଶୁ କଳାକାର ମାନସ କୁମାରଙ୍କ ଅଭିନୟ ମର୍ମସ୍ପର୍ଶୀ ହୋଇପାରିଥିଲା ।



## ଉତ୍କଳିକା (୨୫-୧-୧୯୯୮)

# 'ଆମେ କ୍ରାନ୍ତି'ର 'ବନ୍ଦେମାତରମ୍' ପୁରସ୍କୃତ

ସ୍ୱାଧୀନତାର ପଚାଶବର୍ଷ ପୂର୍ତ୍ତି ଉପଲକ୍ଷେ ଭାରତୀୟ ଉପମହାଦେଶର ଗଳିକନ୍ଦିରେ ଆଜି ସୁବର୍ଣ୍ଣ ଜୟନ୍ତୀର ଅନାହତ ସ୍ୱର ଅନୁରଣିତ । ସମୟ ଆସିଛି ପରଖିବାକୁ ନିଜକୁ ଏବଂ ଅନ୍ୟକୁ, ପଚାଶବର୍ଷର ଲୁହ-ଲହୁର ସ୍ୱାଧୀନତାକୁ, ପ୍ରଗତିକୁ ଆଉ ପରଶ୍ରୀକାତରତାକୁ । ଅତୀତ ହଜିଯାଇଚି । ସ୍ୱାଧୀନ ଭାରତ ଆଜି ସମସ୍ୟା ଘେରରେ ବନ୍ଦୀ । ଏ ପଚାଶବର୍ଷ ଭିତରେ ଆମେ ମା'କୁ... ମାଟିକୁ ଏବଂ ନିଜକୁ ଚିହ୍ନିପାରିଲୁନି । ସବୁଜ ଅରାଜକତାର ଆର୍ତ୍ତଚିତ୍କାର ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀଙ୍କ ହାତରେ ସ୍ୱରାଜ ଆଜି ସନ୍ତାପିତ, ଲୁଣ୍ଠିତ । ତ୍ରାହି ତ୍ରାହି ଡାକ ଛାଡୁଛି ଜନନୀ ଜନ୍ମଭୂମି । ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଜଣେ ବ୍ୟକ୍ତି କିଛି କରିପାରିବ ନାହିଁ । ଆସନ୍ତୁ... ସମସ୍ତେ ଆଗେଇ ଆସନ୍ତୁ । ସେହି ମୁକ୍ତି ସଙ୍ଗୀତ 'ବନ୍ଦେମାତରମ୍' ଗାନ କରି ଜନ୍ମଭୂମିକୁ ଭ୍ରଷ୍ଟାଚାରୀମାନଙ୍କ କବଳରୁ ରକ୍ଷା କରିବା । ଏହା ଥିଲା ନାଟ୍ୟକାର ନାରାୟଣ ସାହୁଙ୍କର ଦେଶବାସୀଙ୍କ ପ୍ରତି ମୁକ୍ତ ଆହ୍ୱାନ । ନାଟକ 'ବନ୍ଦେମାତରମ୍'ର କାତର କଣ୍ଠର ଆଓ୍ୱାଜ ।

ଗତ ୧୪ ତାରିଖ ଦିନ ଉଦଳାର କ୍ରାନ୍ତିକାରୀ ନାଟ୍ୟସଂସ୍ଥା 'ଆମେ କ୍ରାନ୍ତି' ମଞ୍ଚସ୍ଥ କରିଥିଲେ ଅନୁଗୁଳର ସଭାଘର ମଞ୍ଚରେ ଏକ ବାସ୍ତବଧର୍ମୀ ନାଟକ 'ବନ୍ଦେମାତରମ୍' । ନାଟ୍ୟମ୍ ଆୟୋଜିତ ପଞ୍ଚମ ରାଜ୍ୟସ୍ତରୀୟ ନାଟକ ପ୍ରତିଯୋଗିତାରେ ଅଭିନୀତ ଏହି ନାଟକର ସନ୍ଦେଶ ଥିଲା ଯୁଗ ଉପଯୋଗୀ । ସମାଜର ପ୍ରତିଟି ସ୍ତରର ଦୁର୍ନୀତିକୁ ମୂଳୋତ୍ପାଟନ ପାଇଁ ନାଟକ ଦେଇଥିଲା ଚେତାବନୀ । ଆଜିର ପୁରପଲ୍ଲୀରେ ପାଳିତ ହେଉଥିବା ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପ୍ରତି ଏହି ନାଟକ ଶାଣିତ ବ୍ୟଙ୍ଗ ପ୍ରଦର୍ଶନ କରିଥିଲା । ନାଟକଟିକୁ ରଚନା କରିଥିଲେ ଡଃ ନାରାୟଣ ସାହୁ । ନିର୍ଦ୍ଦେଶନା ଦେଇଥିଲେ ନାଟ୍ୟମ୍ । ଗତବର୍ଷ ପ୍ରତିଯୋଗିତାର ଶ୍ରେଷ୍ଠ ନିର୍ଦ୍ଦେଶକ ରାମଚନ୍ଦ୍ର ମହାପାତ୍ର । ସଙ୍ଗୀତ ପରିଚାଳନା କରିଥିଲେ ବେଣୁଧର ଜେନା । ମଞ୍ଚ ପରିଚାଳନା କରିଥିଲେ ନିରଞ୍ଜନ ସାହୁ, ଦେବେନ୍ଦ୍ର ମହାନ୍ତି ଏବଂ ମହେଶ୍ୱର ପୃଷ୍ଟି । ବିଭିନ୍ନ ଭୂମିକାରେ ନିତାଇରାମ—ରତ୍ନାକର ଦାଶ, ମାଳପାଣି—ପ୍ରଦ୍ୟୁମ୍ନ ଦାସ, ଚରଣ ଦାସ—କ୍ଷୀରୋଦ ମହାନ୍ତି, ସଲିମ—ବରଦାକାନ୍ତ ପାତ୍ର,

ପରମଗୁରୁ—ଲରେନ୍ସ କୁମାର, ବଗୁଲିଦାସ—ପ୍ରଦୀପ ପଣ୍ଡା, ଗାଲମାଧବ—ଆଶିଷ ମହାନ୍ତି, ରାମୁ—ରତିକାନ୍ତ ବେହେରା, ସମୟ—ମାନସ ନାଏକ ଏବଂ ଭାରତୀ—ଜ୍ୟୋତ୍ସ୍ନା ରାମଶର୍ମା ।

ପ୍ରତିଯୋଗିତାରେ ଏହି ନାଟକଟି ଶ୍ରେଷ୍ଠ ପାଣ୍ଡୁଲିପି, ଶ୍ରେଷ୍ଠ ଅଭିନେତା (ରତ୍ନାକର), ୨ୟ ଶ୍ରେଷ୍ଠ ପ୍ରଯୋଜନା, ଶ୍ରେଷ୍ଠ ଶୃଙ୍ଖଳିତ ଦଳ ଏବଂ ବିଶେଷ ପୁରସ୍କୃତ ଅଭିନେତା (ପ୍ରଦୀପ) ଏହିପରି ସର୍ବମୋଟ ପାଞ୍ଚଗୋଟି ପୁରସ୍କାର ହାସଲ କରିଥିଲା ।



## ମାତୃଭାଷା (୧୨-୪-୯୮)

# ଡଃ ନାରାୟଣ ସାହୁଙ୍କ ନାଟକ 'ବନ୍ଦେ ମାତରମ୍' ଅଭିନୀତ

''ଗାଲମାଧବ ! ଦେଶ ଶାସନ କରିବା ପୂର୍ବରୁ ପ୍ରଥମେ ମଣିଷ ହେବାକୁ ଚେଷ୍ଟା କର । ଏ ଦେଶର ଭଲ ମଣିଷର ଘୋର ଅଭାବ ଦେଖାଦେଇଛି''– ଏ ସଂଳାପ ଥିଲା ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀ ନିତାଇରାମଙ୍କର । ଲହୁଲୁହାଣ ହେଇ କେତେ କଷ୍ଟ ସହି ସେ ଆଣିଥିଲେ ଏ ଦେଶବାସୀଙ୍କ ପାଇଁ ସ୍ୱାଧୀନତା । ହେଲେ ଭବିଷ୍ୟତର ଦାୟାଦମାନେ ଗାନ୍ଧିଙ୍କୁ ଭୁଲିଗଲେ, ସ୍ୱରାଜ ଆଉ ସ୍ୱାଧୀନତାକୁ ଭୁଲିଗଲେ । ସତ୍ୟ-ଧର୍ମ-ନ୍ୟାୟ ସ୍ଥାନରେ ହିଂସା-ପରଶ୍ରୀକାତରତା ଆଉ ଦୁର୍ନୀତି ରାଜପଣ କଲା । ଯେଉଁମାନଙ୍କ ଲାଗି ଗାନ୍ଧି ସ୍ୱରାଜ ଆଣିଲେ, ଶେଷରେ ସେହିମାନେ ହିଁ ହେଲେ ପ୍ରତାରଣାର ଶିକାର । ମନ୍ତ୍ରୀ-ନେତା-ଟାଉଟରଗଣ ହେଲେ ଗଣତନ୍ତ୍ରର ଭାଗ୍ୟବିଧାତା । ଯେଉଁଠି ମଣିଷତାକୁ ପ୍ରତି ମୁହୂର୍ତ୍ତରେ ହତ୍ୟା କରାଯାଏ, ଯେଉଁଠି ସତ୍ୟର କଣ୍ଠରୋଧ କରାଯାଏ, ସେଠି ବାପୁଙ୍କ ଅହିଂସାକୁ କିଏ ବା କାହିଁକି ପଚାରିବ ? ଲୋକେ କେବଳ ପରମ୍ପରା ନ୍ୟାୟରେ ପାଳନ କଲେ ଗାନ୍ଧିଜୟନ୍ତୀ ଆଉ ସ୍ୱାଧୀନତା ଦିବସ । ସଚ୍ଚା ଗାନ୍ଧିବାଦୀର କେବଳ ଦୁଃଖ ଏତିକି ଯେ ସେମାନେ ନ ମରି ବଞ୍ଚି ରହିଛନ୍ତି ।

ଏହାଥିଲା ନାଟକ 'ବନ୍ଦେ ମାତରମ୍'ର ମର୍ମସ୍ପର୍ଶୀ ଆହ୍ୱାନ । ଏହା କେବଳ ନାଟକରେ ସଂଳାପ ନୁହେଁ, ବରଂ ପ୍ରକାରାନ୍ତରେ ଏହା ଦେଶବାସୀଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସାମ୍ପ୍ରତିକ କାଳରେ ରାଜନୀତିର ଦୁଃଖଦ ଚିତ୍ରକୁ ନାଟ୍ୟକାର ତୀବ୍ର ଭାବରେ ବ୍ୟଙ୍ଗ କରିଛନ୍ତି । ଏହି ବ୍ୟଙ୍ଗ ଭିତର ଦେଇ ବିଳପି ଉଠିଛି ଗୋଟାଏ ଦେଶଭକ୍ତ ସଚ୍ଚୋଟ ଗାନ୍ଧିବାଦୀଙ୍କ ଅନ୍ତର । ଆଜିର ସମାଜ ପାଇଁ ଏ ନାଟକ ଏକ ଚେତାବନୀ । ନାଟକଟିକୁ ରଚନା କରିଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ ଡଃ ନାରାୟଣ ସାହୁ ଏବଂ ନିର୍ଦ୍ଦେଶନା ଦେଇଥିଲେ ସ୍ୱରୂପ ଜେନା । ବିଭିନ୍ନ ଭୂମିକାରେ ଅଂଶ ଗ୍ରହଣ କରିଥିଲେ ମଞ୍ଜୁ, ଦେବ, ଟିକିନା, ସୁର, ସାବତ, ହିଟୁ, ପ୍ରତାପ, ଅଗସ୍ତି, ସମୀର, ମହାବଳ ଏବଂ ସୁଲୁ । ସଙ୍ଗୀତ ପରିଚାଳନା କରିଥିଲେ ବିବେକ ଜେନା । ନାଟକଟି 'ଅଙ୍ଗୁରବାଲା ନାଟ୍ୟ ନିକେତନ' ପକ୍ଷରୁ ପଳାଶୁଣିଠାରେ ମଞ୍ଚସ୍ଥ ହୋଇଥିଲା ।

